ବିଶିକେଶନ ବୋଲଇ ରାମନାମ ବୋଲ
ଜୀବନ୍ତେ ମରନ୍ତେ ସେହି ନାମ ଏକା ଭଲ ।
ସର୍ବ ସମ୍ପଦ ଦିଅନ୍ତି ସର୍ବବିଘ୍ନ ଧ୍ୱଂସି
ଜୀବ ସାର୍ଥକ ହୁଅନ୍ତି ଘୋଷି ଅହର୍ନିଶି ।
ଦନୁଜ ବିନାଶି ଋଷି ଯାଗକୁ ସେ ମଣ୍ଡି
ପିତା ସତ୍ୟପାଳି ପୃଥ୍ୱୀଭାରା ଛନ୍ତି ଖଣ୍ଡି ।
ଜାତ ଅନ୍ତଃକାଳେ ଏକା ରାମନାମ ସାହା
ଯୋଗୀଜନେ ହୃଦେ ସଦା ଚିନ୍ତୁଥାନ୍ତି ଯାହା ।
ଯମରାଜା ଅଳପକେ ହୁଏ ପରାଜିତ
ଶ୍ରୀ ରାମନାମକୁ ପିତା ଧର ହୃଦଗତ ।
ନିୟମ ନିତ୍ୟକର୍ମାଦି ଯାଗ ତପ ମନ୍ତ୍ର
ବେଦ ପୁରାଣ କେବଳ ରାମ ବ୍ରହ୍ମ ତତ୍ତ୍ୱ ।
ଯାହା ସୁମରନ୍ତେ ବସି କାଳ କାମ ନିଦ୍ରା
ଆସନ ମାର୍ଜନ କର ରାମନାମ ମୁଦ୍ରା ।
ଯାବତ ଅଛନ୍ତି ଚନ୍ଦ୍ର ଦିବାକର ଆଦି
ଯେ ନାମ ଜପନ୍ତି ଶିବ ବ୍ରହ୍ମା ବିବୁଧାଦି ।
ଅବସାନ କାଳକୁ ଯେ ଯମପାଶ ଛେଦି
ଅରିଷ୍ଟ ଆପଦମାନ ଖଣ୍ଡେ ନିରବଧି ।
ସବୁବେଳେ ସୁମରିବ ଯେବେ ତାଙ୍କୁ ହୃଦେ
ଯମଦଣ୍ଡୁ ଉଦ୍ଧାରିବେ ରାମଚନ୍ଦ୍ର ହାଦେ ।
କୁମାର କହନ୍ତେ କର୍ଣ୍ଣ ଚିନ୍ତେ ହୃଦଗତେ
ଶ୍ରୀରାମ ଶ୍ରୀରାମ ବୋଲି ରଟେ ଗର୍ଭଗତେ ।
ରାଜୀବ ଲୋଚନ ପୀତବସ୍ତ୍ର ଅଙ୍ଗେ ଶୋଭା
ଦୂର୍ବାଦଳ ଶ୍ୟାମଳ ତୋ ମନୋହର ଆଭା ।
କଉଶଲ୍ୟାର ନନ୍ଦନ ସୀତା ପ୍ରାଣନାଥ
ଦୁଷ୍ଟ ରାବଣ ନାଶିଲୁ ଘେନିଣ ଭକତ ।
ଦୟାସାଗରର ନାଥ ସଙ୍କଟୁ ଉଦ୍ଧାରୁ
ଶାରଳା ଦାସକୁ ରଖ ବିପଦ ସାଗରୁ ।
ଶୁଣ ଚଇତନ ଏବେ କର୍ଣ୍ଣର ମହିମା
ଏଡ଼େ ଅସମ୍ଭବ କଥା କରିଲା ମହାତ୍ମା ।
ଶିରରୁ ଚରଣଯାଏ ଛାଡ଼ଇ ଛଉରୀ
ପାଦତଳ ସହିତରେ କାଢ଼ିଲେ ବିଦାରି ।
ଛାଲ ଉଚ୍ଛୁଡ଼ନ୍ତେ ଯେହ୍ନେ ଦିଶଇ ବିକୃତ
ତେସନେ ଦିଶେ ରକ୍ତରେ ଶରୀର ଆପ୍ଳୁତ ।
କୋମଳ ପଦ୍ମ ପତ୍ରରେ କର୍ଣ୍ଣ ଅଛି ଶୋଇ
ଜଳବୃଷ୍ଟି ପ୍ରାୟ ରକ୍ତ ଶରୀରୁ ବହଇ ।
ଗତ ଆତ୍ମା ପ୍ରାୟ କର୍ଣ୍ଣ କରିଅଛି ଦୃଷ୍ଟି
ବୋଇଲା ସେ ନିଅ ପିତା ପୁରୁ ତୋ ଅଭୀଷ୍ଟି ।
ତୁମ୍ଭଙ୍କୁ ଦାନ ଦେବାର ଯେଉଁଫଳ ପ୍ରାପ୍ତି
ସେ ସମସ୍ତ ଧର୍ମ ମୋତେ ହେଉ ପରାପତି ।

ମନୋବାଞ୍ଛା ପୂର୍ଣ୍ଣହେଉ ବୋଇଲା ମଘବା
ଅକ୍ଷୟ ଧର୍ମ ପ୍ରପାତ ତୋର ହେଉ ବାବା ।
ବାବୁ ମାୟା ସଂସାର ଏ କାହାର ନୁହଇ
କବଚଦାନୀ କର୍ଣ୍ଣ ତୁ ଘୋଷିଲା ଏ ମହୀ ।
ଦାନେଶ୍ୱର କର୍ଣ୍ଣ ବୋଲି କକ୍ଷା ଜଗଜ୍ଜେଠି
ତ୍ରୈଲୋକ୍ୟରେ ବିକାଶିଲା ତୋରନାମଗୋଟି
ତଳ ହସ୍ତରେ ଘେନିଲେ ଦେବ ଆଖଣ୍ଡଳ
ଉପର ହସ୍ତରେ ଦେଲା କର୍ଣ୍ଣ ମହାବଳ ।
କବଚ କୁଣ୍ଡଳ ବଜ୍ର ଛଉରୀ ଏ ତିନି
ଏ ସମସ୍ତ ଦେଲା କର୍ଣ୍ଣ ସତ୍ୟବାକ୍ୟ ଭଣି ।
ପିତାର ଚରଣେ କର୍ଣ୍ଣ ହୋଇ ପରଣାମି
ବୋଇଲା ତୃପ୍ତ ଏବେ କି ହେଲ ଦେବସ୍ୱାମୀ ।
ବାସବ କରନ୍ତେ ଚିନ୍ତା ସାରଥି ମାତଳି
ପୁଷ୍ପକ ଯାନ ଯେ ଘେନି ଇନ୍ଦ୍ରପାଶେ ମିଳି ।
ଇନ୍ଦ୍ର ସେ ସମସ୍ତ ଯହୁଁ ଘେନିଲେ ପୁଲକେ
ସାଧୁ ସାଧୁ କର୍ଣ୍ଣ ବୋଲି ଶୁଭିଲା ତ୍ରୈଲୋକ୍ୟେ
କବଚ ବଜ୍ର ଛଉରୀ ଅମୃତ କୁଣ୍ଡଳ
ଘେନି ପୁଷ୍ପକେ ବିଜୟ କଲେ ଆଖଣ୍ଡଳ ।
ସ୍ମରନ୍ତେ ପବନ ବେଗେ ଚଳେ ଯେଉଁ ରଥ
ମହାଦାନ ଭାରରେ ସେ ହେଲା ଭୂମିଗତ ।
ମାତଳିକି ଚାହିଁ ଆଜ୍ଞା ଦେଲେ ସୁରନାହା
ଅମର ପୁରକୁ ଯିବା ବେଗେ ରଥବାହା ।
ମାତଳି ବୋଇଲା ତହୁଁ ଶୁଣ ଜମ୍ଭଭେଦୀ
ମହାଦାନ ଭାରେ ରଥ ଆକାଶେ ନ ଭେଦି ।
ଏ ମହା ଦାନ ଘେନିଲ ଆହେ ଦେବସ୍ୱାମୀ
ତାହାର ଭାରରେ ରଥ ଆକାଶେ ନ ଗମି ।
ତାହା ଶୁଣିଣ ଆଶ୍ଚର୍ଯ୍ୟ ହେଲେ ଦେବରାଜ
ବୋଇଲେ ସିଦ୍ଧ କେମନ୍ତେ ହୋଇବ ମୋ କାର୍ଯ୍ୟ
ମାତଳି ବୋଇଲା ଅତି ଦାନ ମହାଭାରା
ପ୍ରତିଗ୍ରହରେ ଖଣ୍ଡନ ହୋଇଯିବ ପରା ।
ତାହା ଶୁଣି ପୁରନ୍ଦର ରଥରେ ନ ବସି
ରଥୁ ଓହ୍ଲାଇ କର୍ଣ୍ଣର ଶରୀର ଆଶ୍ୱାସି ।
ଇନ୍ଦ୍ର ଦେବଙ୍କର ଯହୁଁ ଲାଗେ କରତଳି
କର୍ଣ୍ଣର ଶରୀରେ ଜାତ ହେଲା ରୋମାବଳି ।
ଇନ୍ଦ୍ର ଆଉଁଷିଲେ ଯହୁଁ କର୍ଣ୍ଣବୀର କାୟେ
ଶରୀର ତା ବିକାଶିଲା ରଙ୍ଗବର୍ଣ୍ଣ ପ୍ରାୟେ ।
ପୁଣି ଆପଣା ଦେହରୁ ଦେଲେ ଜ୍ୟୋତିମଣି
କର୍ଣ୍ଣକୁ ସେ ଆଶ୍ୱାସନା କଲେ ବଜ୍ରପାଣି ।
ବାବୁ ଷୋହଡ଼ ସୁନ୍ଦର ପୁତ୍ର ମୋର ତୁ ଯେ
ଅମର ପୁରକୁ ଏବେ କରିବି ମୁଁ ବିଜେ ।

କର୍ଣ୍ଣ ବୋଇଲେ ହେ ପିତା ବେଗେ ଚଳିଯାଅ
ନୋହିଲେ ଆଉ କି ପାଞ୍ଚ ମୋର ଆଗେକହ ।
ଇନ୍ଦ୍ର ବୋଇଲେ ବାବୁରେ ଦାନଭାର ପାଇ
ବୃନ୍ଦାର୍କ ମେଳକୁ ମୁହିଁ ନ ପାରଇ ଯାଇ ।
ତୁହିରେ ନନ୍ଦନ ମୋର ଶୁଭ ଯେବେ ଇଛି
ପ୍ରତିଗ୍ରହ ମାଗ ମୋତେ ଯାହା ମନେ ଅଛି ।
କର୍ଣ୍ଣ ବୋଇଲା ଭୋ ପିତା ନୁହଇ ଯୁକତ
ପିତାଠାରୁ ପୁତ୍ରଦାନ ଘେନିବ କେମନ୍ତ ।
ତା ଶୁଣି ଇନ୍ଦ୍ର ବୋଇଲେ ମୋର ସତ୍ୟସତ୍ୟ
ଯା ମାଗିବୁ ନିଷ୍ଟେ ଦେବି ଏ କଥା ନିୟତ ।
ତଳହସ୍ତ କରି ମାଗେ କର୍ଣ୍ଣ ମହାବୀର
ଊର୍ଦ୍ଧ୍ୱ ହସ୍ତେ ଦାନ ଦ୍ୟନ୍ତି ଦେବ ସୁନାସୀର ।
ଶଙ୍ଖେ ଜଳ ତିଳ ଘେନି ଦେଉଁ କର୍ଣ୍ଣ ହାତେ
କର୍ଣ୍ଣ ବୋଲେ ସ୍ୱର୍ଗପୁର ଛାଡ଼ିଦିଅ ମୋତେ ।
ତାହା ଶୁଣି ମଘବାନ ହେଲେ ସ୍ତମ୍ଭୀଭୂତ
ବୋଇଲେ ମୁଁ ସ୍ୱର୍ଗ ଦେଇ ନ ପାରଇ ସତ୍ୟ ।
ତାହା ଛାଡ଼ି ଆଉ କିଛି ମାଗ ଆରେ ବାଳ
କର୍ଣ୍ଣ ବୋଲେ ତୁମ୍ଭ ସତ୍ୟ ହୋଇଲା ନିଷ୍ଫଳ ।
ପୁଣି ହିଁ ଇନ୍ଦ୍ର ବୋଇଲେ ଅନ୍ୟ ମୋତେମାଗ
କର୍ଣ୍ଣ ବୋଲେ ଦିଅ ପିତା ଐରାବତ ନାଗ ।
ଶୁଣି ଇନ୍ଦ୍ର ବୋଲନ୍ତି ତା ଉଚିତ ନୁହଇ
ଐରାବତ ବଶୀଭୂତ ମୋହର କି ହୋଇ ।
ହୃଦରେ ବିଚାରି ଆନ ମାଗରେ ସନ୍ତତି
ତୁ ଯେଣୁ ପୁତ୍ର ମୋହର କରିବୁ ତୁ ଗତି ।
କର୍ଣ୍ଣ ବୋଲେ ଦାନେ ପିତା ହୋଇଲେ ନିସତ
ସାତ୍ତ୍ୱିକ ନୋହିଲେ ଧର୍ମ ହୁଏ କି ପ୍ରାପତ ।
ଦାନ ଦେବା ପାଇଁ ପିତା ନୁହ କି ତତ୍ପର
ରମ୍ଭା ଅପସରା ତେବେ ମୋତେ ଦାନକର ।
ଇନ୍ଦ୍ର ବୋଲେ ରମ୍ଭା ଛାଡ଼ି ଆନ ମାଗ ସୁତ
କର୍ଣ୍ଣ ବୋଲେ ରବିତଳେ ରହିଛୁ ତୁ ତାତ ।
ବହୁତ ପ୍ରସଙ୍ଗେ ତାତ ହୋଇବ ଅସତ୍ୟ
ପୁଣି ପୁଣି ପାପଭାର ହେଉଛି ବହୁତ ।
ତୁମ୍ଭେ ଯଦ୍ୟପି ପ୍ରାର୍ଥନା କର ଦେବରାୟେ
ଶିର କମଳ କାଟିଣ ଦେବି ଏହିଠାଏଁ ।
ଇନ୍ଦ୍ର ବୋଇଲେ ତୁ ବାବୁ ଦାନେ ଶୂରବନ୍ତା
ସତ୍ୟ ଦ୍ୱାପର ତ୍ରେତୟା ରହିଲା ତୋ କଥା ।
କର୍ଣ୍ଣ ବୋଇଲା ଅସତ୍ୟ ହୋଇଲା ବହୁତ
ବଜ୍ର ଶକତି ମୋତେ କି ଦେବ ଆହେ ତାତ ।
ଏହା ଛଡ଼ା ନ ମାଗିବି ଜାଣ ଆଉ ଆନ
ଦେବୁ କି ନ ଦେବୁ ତାତ ବିଚାର ତୋ ମନ ।

ଏହି ପରକାରେ କର୍ଣ୍ଣ ଦୃଢ଼ ବାକ୍ୟ ଶୁଣି
ଆଶ୍ଚର୍ଯ୍ୟ ହୋଇଣ ଇନ୍ଦ୍ର କରିଲେ ଭାଳେଣି ।
ମାତଳି ବୋଇଲା ଦେବ ଭାର ଅନୁରୂପ
ଦାନ ନ ଦେଲେ କି ନାଶ ଯାଇପାରେ ପାପ ।
ମାତଳି ବଚନ ଶୁଣି ଅମରାଧିନାଥ
ବିଚାର କରନ୍ତି ଶକ୍ତି ଦେବି ମୁଁ କେମନ୍ତ ।
କର୍ଣ୍ଣକୁ ବୋଇଲେ ସ୍ୱର୍ଗେ ମୁହିଁ ଅଧିକାରୀ
ଅସୁର ଦାନବେ ମୋର ସମରେ ବଇରୀ ।
ଐରାବତ ପୃଷ୍ଟେ ମୋର କରେ ବଜ୍ର ଦେଖି
ଭୟେ ଦୂରାମ୍ଭକ ଯାନ୍ତି ସମର ଉପେକ୍ଷି ।
କର୍ଣ୍ଣ ବୋଲେ ତାତ କିଛି ନ ଦେବାକୁ ଇଚ୍ଛା
ବୃଥାରେ ସତ୍ୟ କିପାଇଁ କରିଲ ହେ ବାଞ୍ଛା ।
ମାତଳି ବୋଇଲା ଦେବ ମନର ସରାଗେ
ଅକ୍ଷୟ ସ୍ୱର୍ଗକୁ ଯିବା ଅସ୍ତ୍ର ଦିଅ ବେଗେ ।
ତହୁଁ ଇନ୍ଦ୍ର ସୁମରିଲେ ସେ ବଜ୍ର ଶକତି
ଷଡ଼ ଲକ୍ଷ ଯୂଣେ ସେହୁ ବିକାଶିଲେ ଜ୍ୟୋତି ।
ବଜ୍ର ଆସନ୍ତେ ସକଳେ କରିଲେ ଆଶଙ୍କା
ଚତୁର୍ଦ୍ଦଶ ଭୁବନରେ ପଡ଼ିଗଲା ଦକା ।
ବିଶ୍ୱରୂପ ବିକାଶିଲେ ଯହୁଁ ଇନ୍ଦ୍ରରାଜେ
ସେ ମହା ବଜ୍ର ଶକତି ଧଇଲେ ଶ୍ରୀଭୁଜେ ।
ଶତଧାର ଶକତିର ସହସ୍ରେକ ଜ୍ୟୋତି
ଦୀନ ପୁରୁଷେ ଦେଖିଣ ମନେ କଲେ ଭୀତି ।
ଉପର ହସ୍ତ କରିଣ ଦେଲେ ମଘବାନ
ତଳହସ୍ତେ କର୍ଣ୍ଣବୀର ଘେନିଲା ବହନ ।
କର୍ଣ୍ଣବୀରର ଶରୀର ହୋଇଥିଲା କଞ୍ଚା
ଶକତିର ତେଜ ଲାଗି ହେଲା ସର୍ବସଞ୍ଚା ।
କବଚ କୁଣ୍ଡଳ ପୁଣି ଅଭେଦ୍ୟ ଛଡ଼ଉରୀ
ଯାକୁ ଘେନି ଇନ୍ଦ୍ର ବିଜେ ରଥେ ଯାଇକରି ।
ଶକତି ଛାଡ଼ନ୍ତେ ମ୍ଳାନ ଇନ୍ଦ୍ରଙ୍କର ତେଜ
ଦେଖି କର୍ଣ୍ଣ ବୋଲେ ରହ ରହ ସୁରରାଜ ।
ଯେ ହେତୁ ଶକତି ମୋତେ ଦେଲୁ ଦୃଢ଼ବାକ୍ୟେ
ଥାଉ ଏ ତୋହର ହସ୍ତେ ମୋହର ଉଦକେ ।
ସ୍ୱାମୀ ତୁ ଶକତି ଦେଲୁ କରି ସତ୍ୟବିଧି
ଇନ୍ଦ୍ର ପ୍ରାୟେ ନ ଦିଶିଲୁ ଏବେ ଜମ୍ଭଭେଦୀ ।
ଯେତେବେଳରେ ହୋଇବମୋର ଏଥେ କାର୍ଯ୍ୟ
ମାଗନ୍ତେ ଶକତି ଦେବୁ ମୋତେ ଦେବରାଜ ।
ଇନ୍ଦ୍ର ବୋଇଲେ ବାବୁ ଏ ଅପାଲଟ ଶର
ସମାନ ଶତ୍ରୁ ଜାଣି ତୁ କରିବୁ ପ୍ରହାର ।
ଏକାଥରେ ଦେବ ଅସ୍ତ୍ର ଯାକୁ ଦେବୁ ପେଷି
ରୁଦ୍ର ଦିଗପାଳେ ହେଲେ ଆସିବ ବିନାଶି ।

କର୍ଣ୍ଣ ବୋଲଇ ତାତ ମୁଁ ମାଗିବଇଁ ଯାହା
ସାବଧାନ ହୋଇ ଶୁଣ କହୁଅଛି ତାହା ।
ଭାରତ ସମର ହେବ ଶୁଣିଅଛି କର୍ଣ୍ଣେ
ସମରେ ମାରିବି ମୁହିଁ କୃଷ୍ଣ ଅରଜୁନେ ।
ମାତଳି ବୋଇଲେ ଦେବ କଲ ବଡ଼ ମନ୍ଦ
ନିଜ ଶରେ ନିଜ ପୁତ୍ରେ ଚିନ୍ତିଲ ପ୍ରମାଦ ।
ଇନ୍ଦ୍ର ବୋଇଲେ ମାତଳି ନ କର ତୁ ଭ୍ରାନ୍ତି
ଏହି ବୋଲେ ପାର୍ଥ ହରି ମାରି କି ହୁଅନ୍ତି ।
କୃଷ୍ଣଙ୍କୁ ଶକତି ଯେବେ କରିବ ଏ ଭେଦ
ତେବେ ଅର୍ଜ୍ଜୁନଙ୍କୁ କାହୁଁ ପଡ଼ିବ ପ୍ରମାଦ ।
କର୍ଣ୍ଣକୁ ଚାହିଁ ବାସବ ଦେବତା ଯେ ପୁଛି
ଚିରଜୀବୀ ହୋଇଥାଅ ସ୍ୱର୍ଗକୁ ଯାଉଛି ।
ଶୁଣ ଆରେ କର୍ଣ୍ଣ ବୋଲି ଡାକନ୍ତି ବିଡ଼ୋଜା
ପାଣ୍ଡବ ଅଭାବେ ସ୍ୱର୍ଗ କରିଥିଲି ତେଜ୍ୟା ।
ନିର୍ବାତକବଚ ନିର୍ଦ୍ଧୂମର ପଣନାତି
ଜମ୍ଭ ଦଇତ୍ୟର ସେହୁ ଅଟଇ ସନ୍ତତି ।
ସେ ଜମ୍ଭଦୈତ୍ୟ ସ୍ୱର୍ଗର ହୋଇଲା ବିବାଦୀ
ତାହାକୁ ମାରି ମୋ ନାମ ହେଲା ଜମ୍ଭଭେଦୀ ।
ଜମ୍ଭଦୈତ୍ୟ ସୁତ ବଜ୍ର କବଚ ପ୍ରତ୍ୟକ୍ଷ
ସେହୁ ହୋଇଲା ମୋହର ପୁଣି ଐରୀପକ୍ଷ ।
ତାହାକୁ ମୁଁ ନାଶକଲି ବିଷମ ସମରେ
ତା ପୁତ୍ର ନିର୍ବାତ ପୁଣି ବାହିଯେ ଅମରେ ।
ସତ୍ୟ ତ୍ରେତୟା ଦ୍ୱାପର ତିନିଯୁଗ ମଧ୍ୟେ
ଚୌରାଅଶୀ ଥର ମୁହିଁ ହାରିଲି ତା ଯୁଦ୍ଧେ ।
ଅର୍ଜ୍ଜୁନ ବଧ କରିଲା ସମରରେ ଯହୁଁ
ତୃପତ ହୋଇଣ ବର ଯାଚିଲଇଁ ତହୁଁ ।
ବୃନ୍ଦାର୍କ ଯକ୍ଷ କିନ୍ନର ବସିଥିଲେ ସର୍ବେ
ସନ୍ତୋଷେ ବୋଇଲି ପୁତ୍ର ବର ମାଗ ଏବେ ।
ପାର୍ଥ ବୋଇଲା ପ୍ରସନ୍ନ ଯେବେ ହେଲ ତାତ
ବଜ୍ର ଛଉରୀ କୁଣ୍ଡଳ ମୋତେ ହେଉ ପ୍ରାପ୍ତ ।
ବାବୁ ଦେବତା ବସାଇ ସତ୍ୟକଲି ଯାହା
ବିଚାର କେମନ୍ତେ ମୁହିଁ ନ ଦେବଇଁ ତାହା ।
ଏବେ ଆରେ କର୍ଣ୍ଣବୀର କହୁଅଛି ତୋତେ
କୁରୁପାଣ୍ଡବ ସମର ନ ହୁଏ ଯେମନ୍ତେ ।
ପାଣ୍ଡବେ ତୋର ସୋଦର ଦୁର୍ଯ୍ୟୋଧନ ସଖା
ବୁଦ୍ଧି ଉପାୟରେ କର କୁରୁବଂଶ ରକ୍ଷା ।
ହରି ଅର୍ଜ୍ଜୁନ ଅଟନ୍ତି ଏକଆତ୍ମା ବେନି
ମହୀଭାରା ଉଶ୍ୱାସିବେ ପାଣ୍ଡବଙ୍କୁ ଘେନି ।
କର୍ଣ୍ଣ ବୋଇଲା ହେ ତାତ ଚଳି ଯା ଅମରେ
କଥା ବଢ଼ାଇଲେ କୋପ ବଢ଼ିବ ଅନ୍ତରେ ।
ଚଳିଗଲେ ଇନ୍ଦ୍ରଦେବ ମହାଦାନ ଘେନି
ମତ୍ସ୍ୟଦେଶେ ପାଣ୍ଡବଙ୍କୁ ଭେଟିଲେ ସେକ୍ଷଣି ।
କବଚ ବଜ୍ର ଛଉରୀ ଅମୃତ କୁଣ୍ଡଳ
ପାଣ୍ଡବଙ୍କୁ ଦେଲେ ନେଇ ଦେବ ଆଖଣ୍ଡଳ ।
ବୋଇଲେ କିସ କହିବି କର୍ଣ୍ଣର ମହିମା
ପୁରୁଷଙ୍କ ଉତ୍ତମ ସେ ସାଧୁ ମହାତମା ।
ପୁଣ ସାଧୁ ଆତ୍ମା ତାର ଯେ ପୁତ୍ର ଦୁଇଟି
କିଞ୍ଚିତେ ନ ଛାଡ଼ି ଅଙ୍ଗ ପକାଇଲେ କାଟି ।
କର୍ଣ୍ଣ ନାରୀ ଦୁଇ ସୁତ ଦେଖି ଯାଙ୍କ ସତ୍ୟ
ବିଚାରିଲେ ବସାଇଣ ନେଇ ପୁଷ୍ପରଥ ।
ମାନବ ହୋଇଲେ ମଧ ସ୍ୱର୍ଗକୁ ଯୋଗାଇ
କର୍ଣ୍ଣପାଇଁ ଏ ଭାରତବର୍ଷ ଶୋଭାପାଇ ।
ଏହି କଥା କହନ୍ତି ଯେ ଅମରାଧିନାଥ
ପୁରଃସରିଣ କର୍ଣ୍ଣକୁ ପ୍ରଶଂସି ବହୁତ ।
ବାବୁ ଏଡ଼େ ଦାନ ମୋତେ ଦେଲା ସୂର୍ଯ୍ୟବାଳ
ଦାନ ଭାରରେ ମୋ ରଥ ହୋଇଲା ଅଚଳ ।
ଯହୁଁ ନ ଯାଇ ପାରିଲି ପୁର ବାରସ୍ୱତୀ
ପ୍ରତିଗ୍ରହ କରି ତାକୁ ଦେଲଇଁ ଶକତି ।
ତହୁଁ ମୋତେ ବୋଲେ ସାକ୍ଷୀଥାଅ ସୁରେଶ୍ୱର
ଏହାବଳେ ହରି ପାର୍ଥ କରିବି ସଂହାର ।
ଭୋ କୃଷ୍ଣ ଅନିବାର ଏ ସସ୍ତ୍ରଧାର ଶକ୍ତି
ମାଗିଲେ କର୍ଣ୍ଣକୁ ମୁହିଁ ଦେବି ଏକ ଘାନ୍ତି ।
ତା ଯେବେ ବଞ୍ଚାଇ ପାରୁ ଭାରତର ଯୁଦ୍ଧେ
ତେବେ ପାଣ୍ଡବେ ଉଦିତ ହେବେ ମହୀମଧ୍ୟେ ।
ସୁଦେଷ୍ଣା ବୋଇଲେ ଏହା ବୁଝ ଶିରୀବକ୍ଷ
ଏ ଶକ୍ତି ଘଟତ୍କୋଚକୁ କରିବ ଯେ ଭକ୍ଷ ।
ଇନ୍ଦ୍ର ବୋଇଲେ ତୁହି ଗୋ କାର କୁଳବଧୂ
ଉଭୟକୁଳ ମଣ୍ଡନି ତୋ ମହିମା ସାଧୁ ।
ସୁଦେଷ୍ଣା ଶ୍ରୀକୃଷ୍ଣ ପାଦେ କରି ପ୍ରଣିପାତ
ବୋଲେ ସ୍ୱର୍ଗେ ଯିବି ଆଜ୍ଞାଦିଅ ହେ ଅଚ୍ୟୁତ ।
ନାରାୟଣଙ୍କ ଚରଣେ ପ୍ରଣମି ସେ ସତୀ
ନିଜ ପ୍ରାଣ ବିସର୍ଜନ କଲା ତତ୍କ୍ଷଣାନ୍ତି ।
ଇନ୍ଦ୍ରଦେବ ସୁଦେଷ୍ଣାକୁ ରଥରେ ବସାଇ
ଅମର ବାରସ୍ୱତୀରେ ପ୍ରବେଶିଲେ ଯାଇ ।
ସାନନ୍ଦ ହେଲା ମେନକା ଶକୁନ୍ତଳା ଦେଖି
ପାଇଲା ସେ ନିଜକନ୍ୟା ଥିଲା ଯେ ଉପେକ୍ଷି ।
ବିରାଟ ସୁଦେଷ୍ଣା ଶବ ଧରି କରି ଶୋକ
କୃଷ୍ଣ ଯୁଧିଷ୍ଠି ବୁଝାଇ କହିଲେ ଅନେକ ।
ଦାହକରି ପ୍ରେତକାର୍ଯ୍ୟ ଆଦି କଲେ ଶେଷ
ଉତ୍ତରାର ଗର୍ଭ ହେଲା ଆସି ଦୁଇମାସ ।

ଶଙ୍ଖଶ୍ୱେତ ଉତ୍ତର ବିରାଟ ପୁତ୍ର ତିନି
ତୁଲେ ଛନ୍ତି ପୁଣି ସାତ କ୍ଷଉଣୀ ସଇନି ।
ଗଙ୍ଗା ଯମୁନା ଯେ ସରସ୍ୱତୀ ମଧ୍ୟସ୍ଥାନେ
ବାରୁଣାବନ୍ତେ ରହିଲେ ଯାଇ ପାଞ୍ଚଜଣେ ।
ବୃଷମାସ କୃଷ୍ଣପକ୍ଷ ତିଥି ଯେ ଚଉଠି
ବୃହସ୍ପତି ବାର ପୁନର୍ବସୁ ବୃଷ ଘଟି ।
ବାଣିଜ୍ୟ କରଣ ସିଦ୍ଧିଯୋଗ ପରବେଶ
ପାପଯୋଗ ନାହିଁ ଶୁଭଲଗ୍ନେ ଚନ୍ଦ୍ର ବୃଷ ।
ଯାତ୍ରାକାଳରେ ଯୋଗିନୀ ବିଜ ପାତାଳେ
ଚଳିଲେ ପାଣ୍ଡବଗଣ ଶୁଭ ଅନୁକୂଳେ ।
ଯୁଧିଷ୍ଠିରଙ୍କ ଛାମୁରେ ଶ୍ରୀ ପୁରୁଷୋତ୍ତମ
ବୋଇଲେ ଦ୍ୱାରକା ଯିବି ଆଜ୍ଞା ଦିଅ ଧର୍ମ ।
ଯୁଧିଷ୍ଠି ବୋଇଲେ କେଉଁ କାର୍ଯ୍ୟେ ଅଣାଇଲୁ
ଉତ୍ତରା ଉତ୍ସବ ଶୁଣି ମତ୍ସ୍ୟଦେଶେ ଗଲୁ ।
ତେଣୁ କହି ନ ପାରିବି ସେହି ବିବରଣ
ଅତଏବ କହୁଅଛି ଶୁଣ ନାରାୟଣ ।
ଦୁର୍ଯ୍ୟୋଧନର ଆମ୍ଭର ହେଉଛି ଅପ୍ରୀତି
ମଧ୍ୟପାତ୍ର ପଣେ ଏବେ ଯାଅ ରମାପତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ସୁତଳ ଭୂତଳ
ଅତିତଳ ଶୂନ୍ୟତଳ ମହାରସାତଳ ।
ବ୍ରହ୍ମାଣ୍ଡ ବୈକୁଣ୍ଠପୁର ଆଦିକରି ଯେତେ
ଏକାଦଶ ଲୋକ ଆଶ୍ରା କରିଛନ୍ତି ତୋତେ ।
ହେ ହରି ଅନାଥ ଜନ ନାଥ ତୁହି ଜାଣି
ପରଦୁଃଖେ ଦୁଃଖୀ ତୋର ନାମ ଚିନ୍ତାମଣି ।
ସମସ୍ତ ଭୁବନେ ହରି ତୋର ଅଟେ ବାସ
ତୁହି ଅଟୁ ଅନ୍ତର୍ଯ୍ୟାମୀ କମଳା ବିଳାସ ।
ମୂର୍ଖର ତୁ ବୁଦ୍ଧିଦାତା ଅଗତିର ଗତି
ଭୃତ୍ୟକୁ ସଦୟ ତୁହି ଥାଉ ନିତିପ୍ରତି ।
ମୁହିଁ ଯେ ଅନାଥ ତୁହି ଅଟୁ ଜଗନ୍ନାଥ
ବିକଳଜନ ଭକତି ଘେନୁ ତୁ ନିରତ ।
ସଂସାରେ ବୋଲନ୍ତି ହରିହର ଆଶ୍ରେ ନେବ
ପୃଥିବୀରେ ଆଶ୍ରା ମେରୁ ମହତ୍ୱେ ମାନବ ।
ଅଗୁଣ ଗୁଣ ଆଶ୍ରୟ ଜଳାଶୟ କୃଷି
ଆତ୍ମା ଅନନ୍ତଶ ଗୃହ ଆଶ୍ରୟ ପ୍ରବାସୀ ।
ପ୍ରାଣର ପିଣ୍ଡ ଆଶ୍ରୟ କଲି ଆଶା ଦ୍ୱନ୍ଦ୍ୱ
ପଣ୍ଡିତ ମହଦାଶ୍ରୟ ଅଧର୍ମରେ ମନ୍ଦ ।
ସ୍ତିରୀର ଆଶ୍ରୟ ସ୍ୱାମୀ ବିଦ୍ୟା ଶ୍ରୀ ପାଠକ
ଜଳ ଆଶ୍ରା ମହୀ ଅଟେ ବାୟୁର ପାବକ ।
ତପୀ ଆସନ ଆଶ୍ରୟେ ଯୋଗାଶ୍ରୟ ଶୂନ୍ୟ
ପାଣ୍ଡବେ ଶ୍ରୀକୃଷ୍ଣ ଆଶ୍ରା ଶୁଭେ ତ୍ରିଭୁବନ ।
ଏ କଥା ଅଟଇ ସାର ପ୍ରକୃତ ସମ୍ବାଦେ
ମୁଁ ଅସାଧ ଅଟେ ହରି ତୋହର ପ୍ରସାଦେ ।
ବିପଦରେ ଆଶ୍ରା ମୋତେ ହେବୁ ଭଗବାନ
ଉଦଯୋଗରେ ସମ୍ପଦ ଦେବୁ ଜନାର୍ଦ୍ଦନ ।
ସମ୍ପଦହିଁ ହେଉ କିବା ବିପଦହିଁ ହେଉ
ତୋ ଆଶ୍ରାରେ ଥାଇ ହରି ମୋର ଦିନଯାଉ ।
ଯୁଧିଷ୍ଠି ବିନୟ ବାକ୍ୟେ କହିଲେ ଅନେକ
ପ୍ରେମ ଗଦଗଦେ ନେତ୍ରୁ ବୁହାଇ ଲୋତକ ।
ଯୁଧିଷ୍ଠିରଙ୍କ କାକୁସ୍ଥ ବାକ୍ୟମାନ ଶୁଣି
କର ଯୋଡ଼ିଣ ବୋଲନ୍ତି ଦେବ ଚକ୍ରପାଣି ।
ମୁହିଁ ତବ ଭୃତ୍ୟଙ୍କର ଅଟେ ସିନା ଭୃତ୍ୟ
ତୁମ୍ଭ ବିନା ଆନଠାରେ ନାହିଁ ମୋର ଚିତ୍ତ ।
ଯହିଁକି ଆଜ୍ଞାହିଁ ମୋତେ ଦେବ ଦେବ ଧର୍ମ
ସେହି ଆଦେଶ ପାଳିବା ମୋ କର୍ତ୍ତବ୍ୟ କର୍ମ ।
ସ୍ୱାମୀ ସଦା ସତ୍ୟବ୍ରତେ ବ୍ରତୀ ଯେଉଁ ଜନ
ପରପାଇଁ ଯେହୁ ଅବା ଦିଅଇ ଜୀବନ ।
ଜନ ପ୍ରବୋଧନେ ଯେହୁ ମିଷ୍ଟବାକ୍ୟ ଭାଷି
ସତ୍ୟକୁ ଲଙ୍ଘନ ଯେହୁ ପରକୁ ଆଶ୍ୱାସି ।
କାଳବଳେ ହିତେ ବ୍ରତେ ବ୍ରତୀ ଯେଉଁଜନ
ପ୍ରସ୍ତାବ ବଚନ ଯେହୁ ନ କରେ ଗୋପନ ।
ବିପତ୍ତି କାଳରେ ଯେହୁ ସାହା ହୁଏ ଜାଣି
କେବଳ କୃଷି ଆଶ୍ରୟେ ବଞ୍ଚେ ଯେଉଁ ପ୍ରାଣୀ ।
ଏକସ୍ତିରୀ ସଙ୍ଗକରି ଏକବାକ୍ୟ ଭାଷି
ମୂର୍ଖ ହେଉ ମୁଖେ ଯେହୁ କଠୋର ନ ଭାଷି ।
ପରଦୁଃଖ ଦେଖି ଯେହୁ ସଦା କରେ ଚିନ୍ତା
ନିଜଶକ୍ତି କ୍ରମେ ଅନ୍ନ ଦିଏ ଯେଉଁ ଦାତା ।
ମାତାପିତା ଯତ୍ନେ ରଖେ ଯେଉଁ ପୁତ୍ର ଭୟେ
ବିପ୍ର ଗୁରୁ ଦେବତାଙ୍କୁ ଯେହୁ ହୃଦେ ଧ୍ୟାୟେ ।
ପ୍ରମାଦ ଭୂମିରୁ ଯେହୁ ଘୁଞ୍ଚେ ଅନୁବ୍ରତେ
ଦୁଷ୍ଟଜନ ଦେଖିଲେ ଯେ ଭୟ କରେ ଚିତ୍ତେ ।
ପର ପ୍ରମାଦରେ ଯେହୁ ହେଉଥାନ୍ତି ଦୁଃଖୀ
ଏତେ ଲୋକଙ୍କର ଜାଣ ମୁହିଁ ଥାଏ ସାକ୍ଷୀ ।
ଦେବ ଦେବୀଙ୍କ ଉପରେ ଯାର ଥାଏ ଚିତ୍ତ
ଏତେ ବାଗେ ଥିଲେ ମୁହିଁ ହୁଏ ତାର ଭୃତ୍ୟ ।
ଏମନ୍ତ ବହୁତ କହି ଦେବ ନାରାୟଣ
ବୋଇଲେ ଯହିଁ ପେଶିବ ଯିବି ମୋ ପ୍ରମାଣ ।
ଯୁଧିଷ୍ଠି ବୋଇଲେ ତହୁଁ ହସ୍ତିନାକୁ ଯିବ
ମୋହର ଦୁଃଖରେ ଦୁଃଖୀ ହେବ ବାସୁଦେବ ।
ପଣ୍ଡୁ ଧୃତରାଷ୍ଟ୍ର ଏହୁ ଥିଲେ ଭାଇ ବେନି
ତାଙ୍କ ପୁତ୍ର ଆମ୍ଭେମାନେ ହେଉ ଅନ୍ୟୋଅନି

ଦୁଇକୁଳ ଯୁଦ୍ଧ ନୋହୁ ହେବ ଯେହ୍ନେ ସନ୍ଧି
ପ୍ରତ୍ୟକ୍ଷେ ନାରାୟଣ ତୁ ଦିଅ ତାଙ୍କୁ ବୁଦ୍ଧି ।
ଦୁଇକୁଳର ବିବାଦ ନୋହୁ ନାରାୟଣ
ମୋହର ନିମନ୍ତେ ଘେନ ମଧପାତ୍ର ପଣ ।
ପ୍ରମାଦକୁ ବଇକୁଲ୍ୟ ମୋର ପଞ୍ଚଆତ୍ମା
ତୋହର ମନେ ବିଚାର ତୁ ଏବେ ମହାତ୍ମା ।
ଧୌମ୍ୟ ପୁରୋଧା ବିଦୁର ଆବର ସଞ୍ଜୟ
କାର ବୋଲ ନ ଶୁଣିଲା ଗାନ୍ଧାରୀ ତନୟ ।
ତୁ ହରି ସୃଷ୍ଟିନାୟକ ସର୍ବ ଅଧିକାରୀ
ରୋମ ରୋମକେ ବ୍ରହ୍ମାଣ୍ଡ ଅଛୁ ତୁହି ଧରି ।
ଭୀଷ୍ମ ଭୂରିଶ୍ରବା ଆଦି ବିଦୁର ସଞ୍ଜୟେ
ଗାନ୍ଧାରୀ ଧୃତରାଷ୍ଟ୍ର ଯେ ଥିବେ ଏକଠାଏଁ ।
ଭାବ ଉପୁଜାଇ ହରି ମାଗ ଗ୍ରାମଟିଏ
କହିବ ତାଙ୍କୁ ଯୁଧିଷ୍ଠି ମାଗିଛି ବିନୟେ ।
ଲକ୍ଷେ ଯୋଜନର ସେହୁ ଅଟେ ଅଧିକାରୀ
ପଡ଼ାଖଣ୍ଡେ ଦେଉ ଭାଇ ବୋଲିଣ ବିଚାରି ।
ମୁହିଁ ତାହାର ସୋଦର ଅଟେ ଯଥାର୍ଥରେ
ନିତି ସେବୁଥିବି ଧୃତରାଷ୍ଟ୍ରର ପୟରେ ।
ପନ୍ନଗ ନାରାୟଣ ସେ ମାନଚକ୍ରବର୍ତ୍ତୀ
କୋଟିପାଦେ ଲକ୍ଷ୍ମୀ ବିଜେ ମଣ୍ଡଳାଧିପତି ।
ହରି ତୋହର ସଞ୍ଚିତ ଅଟେ ମହୀଭାରା
ଆମ୍ଭ ଅନ୍ୟୋଅନ୍ୟ ଦେଖି ହସେ ବସୁନ୍ଧରା ।
ଉଠି ହରି ଭୁଜ ଧରି ଯୁଧିଷ୍ଠିର ରାଜା
ବୋଇଲେ ଦଧିବାମନ ସୁମରି ତୁ ଯା ଯା ।
ଧର୍ମ ଆଶ୍ରା ହେଉ ତୋତେ ପୁରୁ ମନୋବାଞ୍ଛା
ବିପଦେ ସର୍ବମଙ୍ଗଳା କରୁ ତୋତେ ରକ୍ଷା ।
ଯାତ୍ରା କର ତୁହି ଏବେ ଶୁଭ ଅନୁକୂଳେ
ଆପଦ ଖଣ୍ଡନ୍ତୁ ଦେବୀ ମା ସର୍ବ ମଙ୍ଗଳେ ।
ଜୟ ବାକ୍ୟଦେବୀ ବୀଣାପାଣି ସରସ୍ୱତୀ
ତୋର ପାଦପଦ୍ମେ ମୁହିଁ କରୁଛି ବିନତି ।
ବାକ୍ୟ ଚତୁରତା ଦିଅ ଆବର ସୁବୁଦ୍ଧି
ଶରଣ ଉଦ୍ଧାରିଣୀ ଗୋ କର କାର୍ଯ୍ୟସିଦ୍ଧି ।
ରଣରଙ୍ଗରେ ରଖନ୍ତୁ ଦେବୀ ନାରାୟଣୀ
ବଚନ କାଳେ ରଖନ୍ତୁ ଦୁର୍ଗା ମହାତ୍ମାଣୀ ।
ଜଳେ ରଖିଥାନ୍ତୁ ସଦା ଦେବୀ ମାହେଶ୍ୱରୀ
ସ୍ଥଳରେ ରଖନ୍ତୁ ବିଘ୍ନ ନାଶିନୀ ଶଙ୍କରୀ ।
ସଭାରେ ବଚନ ହରି କହିବାର ବେଳେ
ମାନ ଗୋବିନ୍ଦ କଣ୍ଠରେ ବସିବୁ ମଙ୍ଗଳେ ।
ଭକତ ବତ୍ସଳା ଦେବୀ ଝଙ୍କଡ଼ବାସିନୀ
ଶୂଦ୍ରମୁନି ଶାରଳାର ଘେନ ତୁ ଦଇନୀ ।



## ପଞ୍ଚପାଣ୍ଡବଙ୍କର ସମର ପ୍ରତିଜ୍ଞା, ଦୂତପଣେ ଶ୍ରୀକୃଷ୍ଣଙ୍କର ହସ୍ତିନା ଗମନ ଓ ବ୍ୟାସାଦି ମୁନିସହ ବିଦୁର ଗୃହେ ବିଶ୍ରାମ

ପୁଣି ପୁଚ୍ଛାକଲେ ବୈବସ୍ୱତ ନୃପବର
ହେ ଅଗସ୍ତି ତୁମ୍ଭ ପାଦେ କୋଟି ନମସ୍କାର ।
ତୁମ୍ଭ ଶ୍ରୀମୁଖୁଁ ଭାରତ ଶୁଣି ନିତି ନିତି
ସଦା ମୋର ପଞ୍ଚମନ ହେଉଛି ତୃପତି ।
ବିରାଟେ ସକଳ ଶୁଣି ଭବିଷ୍ୟତ ବାଣୀ
ତଦପରେ କେଉଁ କଥା କଲେ ଚକ୍ରପାଣି ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଯୁଧିଷ୍ଠିରଙ୍କ ବଚନେ ବୋଲନ୍ତି ଶ୍ରୀହରି
ତୁମ୍ଭ ବଚନ ଅନ୍ୟଥା କରିବି କିପରି ।
ତୁମ୍ଭ ଆଜ୍ଞା ପରମାଣେ ଯିବି ହସ୍ତିନାକୁ
ପଡ଼ା ଖଣ୍ଡିଏ ମାଗିବି ସେ ଦୁର୍ଯ୍ୟୋଧନକୁ ।
ମାଗିଲେ ନ ଦେବ ଯେବେ ମୋତେ କୁରୁପତି
କିସ କହିଣ ତା ସଙ୍ଗେ କରିବି ଯୁକତି ।
ଯୁଧିଷ୍ଠି ବୋଇଲେ ମୁହିଁ ସୋଦର ଯୁକତେ
ବିଶେଷରେ ଯାଉଅଛ ତୁମ୍ଭେ ମଧପାତ୍ରେ ।
ଦୁର୍ଯ୍ୟୋଧନଠାରୁ ଭାଗ ପାଇବା ଉଚିତ
ପାପ ବିଚାରେ ସେ ସିନା କରୁଛି ବଞ୍ଚିତ ।
ମାଗିଲେ ଯଦି ନ ଦିଏ ଏକଗୋଟି ଗ୍ରାମ
ନିଶ୍ଚୟ ତା ସଙ୍ଗେ ମୋର ହୋଇବ ସଂଗ୍ରାମ ।
ସଂଗ୍ରାମେ ପଶିଲେ ଜାଣ ତେଜିବୁଁ ଉପ୍ରୋଧ
ସୋଦର ଜ୍ଞାନରେ କାର୍ଯ୍ୟ ନୋହିବ ସୁସିଦ୍ଧ ।
ଅପମାନ ହୁଏ ଯେବେ ସେଠାରେ ତୁମ୍ଭର
ଜାଣିବ କିସ ସୋଦର ଅଟେ ସେ ମୋହର ।
ଛାଡ଼ିବି ଉପ୍ରୋଧ ମୋର ସତ୍ୟ ସତ୍ୟ ସତ୍ୟ
ତିଳେହେଁ ସନ୍ଦେହ ନାହିଁ ଜାଣ ହେ ଅଚ୍ୟୁତ ।
ତୁମ୍ଭର ନିରାଶେ ଯେବେ ନ କରେ ସଂଗ୍ରାମ
ସତ୍ୟ ଲଙ୍ଘନରେ ହେବ ଅପ୍ରାପତ ଧର୍ମ ।
ମାତା ପିତା ଦେବତାଙ୍କୁ ନିରାଶ ଯେ କରେ
ସେ ଦୋଷ ପାଇବି କହେ ତୁମ୍ଭର ଆଗରେ ।
କୌରବଙ୍କ ସଙ୍ଗେ ଯେବେ ଯୁଦ୍ଧ ନ କରଇ
ନିରଞ୍ଜନ ଦେବ ଥାଳେ ବିଷ ମୁଁ ଭରଇ ।
ମୋର କୁଳବଧୂ ପାକ ଅସ୍ପୃଶ୍ୟ ଶୋଣିତ
ପିତୃଲୋକଙ୍କୁ ଦେଇ ମୁଁ ହେବି ନର୍କପ୍ରାପ୍ତ ।

ବିଷମ କଠୋର ବାକ୍ୟ ଶୁଣି ଦେବରାଜ
ହୃଦ ମଧ୍ୟରେ ପ୍ରାପତ ହେଲେ ବଡ଼ଲାଜ ।
ଶଙ୍ଖ ଶବଦ କରିଲେ ତହୁଁ ଦାମୋଦର
ପ୍ରବେଶ ହୋଇଲେ ଭୀମ ଶୟନ ମନ୍ଦିର ।
ପାଣ୍ଡବ ସୁନ୍ଦର ଦେଖି ଚରଣେ ପ୍ରଣମି
ବୋଇଲେ କାହିଁକି ବିଜେ ନିଶାକାଳେ ସ୍ୱାମୀ
ଶ୍ରୀକୃଷ୍ଣ ବୋଇଲେ ଧର୍ମ ଆଜ୍ଞା ପରମାଣେ
ହସ୍ତିନାକୁ ଯାଉଅଛି ମଧ୍ୟପାତ୍ର ପଣେ ।
ଦୁର୍ଯ୍ୟୋଧନକୁ ମାଗିବି ପଡ଼ା ଯେ ଖଣ୍ଡିଏ
ତୁମ୍ଭଙ୍କୁ ଘେନି ରହିବେ ଧର୍ମର ତନୟେ ।
ତୁହି ପାଣ୍ଡବକୁଳରେ ଅଟୁ ବଳବନ୍ତ
ତୋତେ ନ କହି କେମନ୍ତେ ମୁହିଁ ହେବି ଦୂତ ।
ବୃକୋଦର ବୋଲେ ତୁମ୍ଭେ ଶୁଣ ଚକ୍ରଧର
ସର୍ବପ୍ରାଣୀ ମନ ତୋତେ ହୁଅଇ ଗୋଚର ।
ସ୍ୱାମୀ ଭାଇଙ୍କ ଚରିତ ଜାଣିଛ ଯୁକତେ
ଅଠାଶୀସସ୍ର ଋଷିଙ୍କୁ ଅନ୍ନ ଦ୍ୟନ୍ତି ନିତ୍ୟେ ।
ଷାଠିଏ ପଉଟି ମୋର ବେଳକେ ଭୋଜନ
ଏ ବିଧିରେ ତିନିବେଳେ ସରେ ମୋର ଦିନ ।
ଏକ ପଡ଼ାକରେ କାହିଁ ପାରିବି କି ବର୍ତ୍ତି
ମୋ ପାଇଁ ମାଗିବ ଖଣ୍ଡେ ପଡ଼ା ଶିରୀପତି ।
ଗୋବିନ୍ଦ ବୋଇଲେ ଟଳେ ତୋ ନାମଶୁଣିଲେ
ତୋତେ କାହୁଁ ପଡ଼ାଦେବ କୁରୁରାୟ ଭଲେ ।
ଭୀମସେନ ବୋଲେ ମୁହିଁ ତାର ଉପକାରୀ
କରମଣ୍ଡଳି ବିବାଦେ ଆଣିଛି ଉଦ୍ଧାରି ।
ସାରଙ୍ଗୀ ରାକ୍ଷସୀ ତାକୁ ଗିଳୁଥିଲା ବେଳେ
ସେ ନିଶାଚରୀକୁ ମାରି ଉଦ୍ଧାରିଲି ହେଳେ ।
କାର୍ଯ୍ୟକୁ ଗ୍ରହଣ କରି ଗୁଣକରେ ପୂଜା
ମୋ କଥା ରକ୍ଷା କରିବ ନିଶ୍ଚେ କୁରୁରାଜା ।
ହରଷ ହୋଇଣ ଗ୍ରାମ ଦେବ କୁରୁପତି
ନ ଦେଲେ ରଣ କରିବି ନିଶ୍ଚେ ଶିରୀପତି ।
ଗୋବିନ୍ଦ ବୋଇଲେ ତୁହି ସଂଗ୍ରାମ କରିଲେ
କାହା କାହାକୁ ଜିଣିବୁ କହ ତେତେବେଳେ ।
ଭୀମ ବୋଲେ କପଟରେ ପଶା ଖେଳବେଳେ
ରାଜ୍ୟ ବାଡ଼ି ନେଇ ବସାଇଲା ସଭାତଳେ ।
ଦ୍ରୌପଦୀର କେଶଧରି ଆଣେ ଦୁଃଶାସନ
ମୋଚନ କରିଲା ସତୀ ପିନ୍ଧିଲା ବସନ ।
ମହାରାଗରେ ପ୍ରତିଜ୍ଞା କଲି ସଭାତଳେ
ଶତଭାଇଙ୍କୁ ମାରିବି ମୁହିଁ ଏକାବେଳେ ।
ବୀର ପ୍ରତିଜ୍ଞା ରଖନ୍ତି କରି ରଣରଙ୍ଗ
ଦୁଃଶା ବାହୁ ଉପାଡ଼ିବି ବିଦାରିବି ଅଙ୍ଗ ।
ସେ ରକ୍ତେ ଦ୍ରୌପଦୀ କେଶ ଦେବି ମୁଁ ପଖାଳି
ପନ୍ଦର ବର୍ଷ ନ ବାନ୍ଧେ କେଶକୁ ପାଞ୍ଚାଳୀ ।
କହୁ କହୁ ପାବନିର କମ୍ପେ ବେନିବାହା
ନୃସିଂହରୂପ ତା ଦେଖି ଜଗନ୍ନାଥ ନାହା ।
ମନ ମଧ୍ୟେ ବିଚାରିଲେ ଭୀମ ଦୁଷ୍ଟବୁଦ୍ଧି
କଦାଚ କୁରୁ ପାଣ୍ଡବେ ନ ହୋଇବ ସନ୍ଧି ।
ଭୀମ ବୋଲେ ଦେବ ତୁହି ଜଗତର ଗୁରୁ
ଭାରା ଉଶ୍ୱାସିବା ପାଇଁ ମର୍ତ୍ତ୍ୟେ ଅବତରୁ ।
ପାଣ୍ଡବଙ୍କ ହିତେ ଯହିଁ ଯେବେ ହେ ଗୋବିନ୍ଦ
ଗ୍ରାମ ମାଗିବ ହେ ହରି କରି ନାନାଛନ୍ଦ ।
ମୋର ଶପଥ ତୁମ୍ଭଙ୍କୁ ଠାକୁରଙ୍କ ରାଣ
ଆମ୍ଭେ ତୋହର ଆଶ୍ରିତ ଜାଣ ନାରାୟଣ ।
ବୃକୋଦରର ମୁଖରୁ ଏସନକ ଶୁଣି
ମଧୁରିପୁ ଆନନ୍ଦରେ କଲେ କମ୍ବୁଧ୍ୱନି ।
ତହୁଁ ଉଠି ଚଳିଗଲେ ଦେବ ରମାପତି
ରାତ୍ର ଅର୍ଦ୍ଧରେ ଭେଟିଲେ ଇନ୍ଦ୍ରର ସନ୍ତତି ।
ଅସମୟେ ଦେଖି ପାର୍ଥ ହୋଇ ପ୍ରଣିପାତ
ବୋଲେ କିସ ଉତପାତ ହେଲା ଯଦୁନାଥ ।
ଶ୍ରୀକୃଷ୍ଣ ବୋଇଲେ ମୁହିଁ ଯାଉଅଛି ବେଗି
ଦୁର୍ଯ୍ୟୋଧନ ନିକଟକୁ ପଡ଼ା ଖଣ୍ଡେ ମାଗି ।
ଯୁଧିଷ୍ଠିର ସେତିକିରେ ହୋଇଲେ ତୃପତି
ବୋଇଲେ ଭାଇଙ୍କୁ ଘେନି ରହିବି ମୁଁ ବର୍ତ୍ତି ।
ଶୁଣି ଆନନ୍ଦ ହୋଇଲା ବାସବର ବାଳ
ବୋଇଲା ଉଦିତ ହେଲା ଆସି ଶୁଭବେଳ ।
ଅଥବା ନାସ୍ତି ଯଦ୍ୟପି କରେ କୁରୁପତି
ତୁମ୍ଭେ ଶାନ୍ତି କରାଇବ ଯିବ ମନୁ ଭ୍ରାନ୍ତି ।
ଶାନ୍ତି ଭଜାଇ କହିବ ତାକୁ ଦେବହରି
ଯେମନ୍ତେ ସୋଦର ପ୍ରୀତି ରହିବ ଆମ୍ଭରି ।
ତୁମ୍ଭେ ଭକତବତ୍ସଳ ଅଟ ପୀତବାସ
ଉଭୟ କୁଳ ବିବାଦ ସନ୍ଧିକରି ଆସ ।
ଯେବେ କୁତୂହଳେ ବଶ ନୋହିବ ହେ ହରି
ସାନ୍ତ୍ୱନା ଦେଇ କହିବ ମୂର୍ଖକୁ ତିଆରି ।
ଧୃତରାଷ୍ଟ୍ର ଭୂରିଶ୍ରବା ସଞ୍ଜୟ ବସାଇ
ବିଦୁର ଭୀଷ୍ମ ଦ୍ରୋଣାଦି ଏହାଙ୍କୁ ଡକାଇ ।
ମଧ୍ୟପାତ୍ରର ପଣକୁ ତୋ ତହୁଁ କେ କ୍ଷମ
ସୋମବଂଶ ରକ୍ଷାକର ଶ୍ରୀ ପୁରୁଷୋତ୍ତମ ।
ସୋଦରେ ସୋଦର ଯଦି କରାଇବୁ ଦ୍ୱନ୍ଦ୍ୱ
ଅବଶ୍ୟ ଉଭୟ କୁଳେ ପଡ଼ିବ ପ୍ରମାଦ ।
ସେମାନେହିଁ ନାଶଗଲେ ଆମ୍ଭେ ଥିବୁ ବୃଥା
ଆମ୍ଭ ଦେଖନ୍ତେ ସେ ପୁଣି ପାଇବେ ଅବସ୍ଥା ।

ବହୁତ ବୁଝାଇ ପ୍ରଭୁ କହିବ ସଭାରେ
ଦୁର୍ଯ୍ୟୋଧନ ବେନିଭୁଜ ଧରି ବିନୟରେ ।
ପରୋପକାରୀ ବିନୟୀ ଅଟେ ଯେଉଁଜନ
ପ୍ରତ୍ୟକ୍ଷେ ଜାଣିବ ସେହି ଅଟେ ନିରଞ୍ଜନ ।
ତୃପ୍ତମନେ ସେହୁ ଯେବେ ଦେବ ପଡ଼ାଟିଏ
ମୋପାଇଁ ମାଗିବ ପଡ଼ା ଆହୁରି ଗୋଟିଏ ।
ଶୁଣି କେଶବ ବୋଇଲେ ଦରହସା ବାଣୀ
ତୋ ନାମ ଶୁଣି ଚଳଇ କୁରୁ ନୃପମଣି ।
ମୋହର ମାଗନ୍ତେ ଯେବେ ନ ଦିଅଇ ତୋତେ
ଦୁଃସହ ଅପମାନରେ ଆସିବି କେମନ୍ତେ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଜଗଦାଧିକାରୀ
ମୁହିଁ ତାହାର ସୋଦର ପ୍ରାଣସଙ୍ଗେ ସରି ।
ସଦାସଦୟ ମୋପ୍ରତି ସେ ମାନଗୋବିନ୍ଦ
ମୋ ନାମ ଧଇଲେ ଦେବ ହୋଇଣ ଆନନ୍ଦ ।
ନିଶ୍ଚୟ ମାଗିବ ତୁମ୍ଭେ ହେ ପୁରୁଷୋତ୍ତମ
ମୋ ନାମ ଶୁଣିଲେ ଦେବ ଖଣ୍ଡେ ଭଲ ଗ୍ରାମ
ଗୋବିନ୍ଦ ବୋଇଲେ ତୋତେ ନ ଦିଅଇ ଯେବେ
କିସ ଉତ୍ତର ଦେବି ମୁଁ କହ ମୋତେ ତେବେ ।
ଅର୍ଜ୍ଜୁନ ବୋଇଲେ ଯେବେ ନ ଦିଅଇ ଗ୍ରାମ
ନିଶ୍ଚୟ ତାହାର ସଙ୍ଗେ ହୋଇବ ସଂଗ୍ରାମ ।
ପୁଣି ଶ୍ରୀକୃଷ୍ଣ ବୋଇଲେ ତୁ ସଂଗ୍ରାମ କଲେ
କାହା କାହାକୁ ଜିଣିବୁ ତୋର ବାହୁବଳେ ।
ଅର୍ଜ୍ଜୁନ ବୋଇଲେ ହରି ଆଗେ ଭୂରିଶ୍ରବା
ଦ୍ୱିତୀୟରେ ଗୁରୁ ଦ୍ରୋଣ ତୃତୀୟେ ଗାଙ୍ଗବା ।
ଚତୁର୍ଥରେ କର୍ଣ୍ଣବୀର ପଞ୍ଚମରେ ଶଲ୍ୟ
ଏହାଙ୍କ ସଙ୍ଗରେ ପୁଣି ଥିବେ ଯେତେ ମଲ୍ଲ ।
ଭୋ ହରି ଏହାଙ୍କୁ ଯେବେ ମୁହିଁ ନ ପାରଇ
ଯୁଧିଷ୍ଠିର ପଦ୍ମପାଦେ ଦ୍ରୋହ ମୁଁ କରଇ ।
ସ୍ତିରୀ ଅନ୍ନ ଖାଇକରି ବଞ୍ଚନ୍ତି ଯେ ପ୍ରାଣୀ
ସେହି ଦୋଷ ଲଭିବଇଁ ଆହେ ଚକ୍ରପାଣି ।
ପରଅନ୍ନ ଭୁଞ୍ଜିକରି ବଞ୍ଚେ ଯେଉଁ ଜନ
ସେ ଜନ ଅନ୍ନକୁ ମୁହିଁ କରିବି ଭୋଜନ ।
ବ୍ରାହ୍ମଣ ହୋଇଣ ଯେବେ ନୀଚ ଅନ୍ନେ ବର୍ତ୍ତେ
ସେ ଦୋଷେଦୋଷୀ ମୁଁ ହେବି ଆହେଯଦୁପତେ
ଅର୍ଜ୍ଜୁନ ମୁଖୁଁ ଏସନ ବାକ୍ୟମାନ ଶୁଣି
ଆନନ୍ଦରେ ମଧୁରିପୁ କଲେ କୟୁଧ୍ୱନି ।
ଅର୍ଜ୍ଜୁନକୁ ସମାର୍ଜ୍ଜନ କରି ଦାମୋଦର
ପ୍ରବେଶ ହୋଇଲେ ଯାଇ ଦ୍ରୌପଦୀ ପାଶର
ଦେଖି ଅତି ସାନନ୍ଦିତା ହୋଇଲେ ପାଞ୍ଚାଳୀ
ପାଦ୍ୟ ଅର୍ଘ୍ୟେ ପୂଜାକରି ହେଲେ ନିଉଛାଳି ।
କେଶବ ଛାମୁରେ ଉଭାଦ୍ରୁପଦ ଦୁଲାଳୀ
ବୋଇଲେ କିସ କାରଣେ ବିଜେ ବନମାଳୀ ।
ବଦନ୍ତି କେଶବ ତୁହି ଶୁଣ ଯାଜ୍ଞସେନୀ
ଯୁଧିଷ୍ଠି ଦେବଙ୍କ ବାଣୀ ମୁହିଁ ଶିରେ ଘେନି ।
ମଧ୍ୟପାତ୍ର ପଣେ ଆଜ୍ଞା କରିଲେ ଆମ୍ଭକୁ
ଦୂତପଣେ ଯାଉଅଛି ହସ୍ତିନା ସଭାକୁ ।
ତିନିଖଣ୍ଡ ପଡ଼ାପାଇଁ ହେବି ମୁହିଁ ପ୍ରାର୍ଥୀ
କୌରବ ପାଣ୍ଡବଙ୍କର ବଢ଼ାଇବି ପ୍ରୀତି ।
ଉଭୟକୁଳ ବିରୋଧ ନୁହେ ଗୋ ଯେମନ୍ତେ
ଯୁଧିଷ୍ଠିଦେବ ଠାକୁର ଆଜ୍ଞାଦେଲେ ମୋତେ
ମାଗୋ ଲକ୍ଷେ ଦ୍ୱିଜ ଘେନି ବ୍ୟାସ ମହାମୁନି
ଅନଳୁ ଜାତ କରିଲେ ନାମ ଯାଜ୍ଞସେନୀ ।
ଦ୍ରୁପଦ ଝିଅର ତୋର ଧୃଷ୍ଟଦ୍ୟୁମ୍ନ ଭ୍ରାତ
ଅଯୋନି ସମ୍ଭବା ତୁହି ଅଟୁ ଆଗୋ ମାତ ।
ସୋମବଂଶ ମଣ୍ଡଣି ଗୋ ଧର୍ମ ପାଟବଂଶୀ
ପଣ୍ଡୁରାଜା ବଧୂ ତୁ ଗୋ ଗୁଣେ ଗୁରୁହଂସୀ ।
ଯୁଧିଷ୍ଠି ଆଜ୍ଞା କହିଲି ଭୀମ ଅର୍ଜ୍ଜୁନକୁ
ଦୁଇକୁଳ ପ୍ରୀତି ହେଉ ବୋଇଲେ ଆମ୍ଭଙ୍କୁ ।
ମାଗୋତୋତେ ନ କହି ମୁଁ ଯିବଇଁ କେମନ୍ତେ
ତୋହର ଯେ ଆଜ୍ଞାଗୋଟି ନିରାଧାର ସତେ
ନାରାୟଣଙ୍କ ମୁଖରୁ ଏହି ବାକ୍ୟ ଶୁଣି
ମୋହେ ପଡ଼ିଗଲା ଦେବୀ ଗତପ୍ରାଣ ଜାଣି ।
କେଶବ କୋଳେ ଧଇଲେ ଭୂମିରୁ ଉଠାଇ
ରୋଦଇ ପାଞ୍ଚାଳୀ ଦେବୀ ପଞ୍ଚାତ୍ମା ଫୁଟାଇ ।
କେଶବ ବୋଧ ଦିଅନ୍ତେ ଲଭିଲା ସାଷ୍ଟାମ
ବୋଇଲେ କିସ କହିଲ ହେ ପୁରୁଷୋତ୍ତମ ।
ସଭାରେ ହରି କପଟ ପଶାଖେଳ କାଳେ
ପାଣ୍ଡବଙ୍କର ସମ୍ପଦ ନେଲା କୂଟଛଳେ ।
ରାଜ୍ୟ ରାଜସିଂହାସନ ଅଶ୍ୱ ଆଦିକରି
ଆତ୍ମା ବିକ୍ରୟ କରିଲେ ପଶାରେ ସେ ହାରି ।
ସଭାତଳେ ବସାଇଲା ନେଇ ପଞ୍ଚଭ୍ରାତ
ବୋଲଇ ଆରେ ପାଣ୍ଡବେ ହେଲ ଆମ୍ଭ ଭୃତ୍ୟ
ସ୍ୱାମୀଙ୍କୁ ଝିଙ୍ଗାସନ୍ତେ ଯେ ଏମନ୍ତ ସମୟେ
ମୋର କେଶ ଧରିନେଲା ଗାନ୍ଧାର ତନୟେ ।
ଅନ୍ତରୀକ୍ଷ ମାର୍ଗେ ମୋତେ ନିଅନ୍ତେ ଚଣ୍ଡାଳ
ଚରଣ ବେନି ମୋହର ନ ଲାଗିଲା ତଳ ।
ଅନେକ ଝିଙ୍ଗାସେ ମୋତେ କହେ କଟୁବାଣୀ
ଆକ୍ରୋଶେ ବାସ ଆକର୍ଷେ ଦୁଃଶା ଶିର ଝୁଣି
ସେକାଳୁ କେଶ ମୁକୁଳା ରଖିଛି ମୁଁ ଜାଣ
ରାଗେ ବନ୍ଧନ ନ କରେ ଆହେ ନାରାୟଣ ।

ପଞ୍ଚଦଶ ବର୍ଷ ପାଞ୍ଚମାସ ନବଦିନ
ନ ବାନ୍ଧିଲି କେଶ ମୋର ଆହେ ଜନାର୍ଦ୍ଦନ ।
ଅବନ୍ଧନ କେଶ ମୋର ଦେଖ ସାକ୍ଷାତରେ
ଏଥିକୁ କି ସୁବିଚାର କୁହ ମୋ ଆଗରେ ।
ଯେଉଁ କରେ କେଶ ମୋର ଧରି ଦୁଃଶାସନ
ଆବର ଯେ କରେ କଲା ମୋତେ ବିବସନ ।
ସେହି ଭୁଜ ଉପାଡ଼ିବେ ବୀର ଭୀମସେନ
ତେବେ ପ୍ରତିଜ୍ଞା ରହିବ ମୋହର ପ୍ରମାଣ ।
ପୁଣି ସେ ବୋଲେ ମହିମା ତୋର ଯେବେ ସତ
ତୁହି ଜଗନ୍ନାଥ ଯେବେ ବଡ଼କୁଳେ ଜାତ ।
ଯଦ୍ୟପି ଜଗନ୍ନାଥ ତୁ ବସୁଦେବ ସୁତ
ତୁହି ଜଗନ୍ନାଥ ଯେବେ ଲକ୍ଷ୍ମୀଙ୍କର କାନ୍ତ ।
ଯେବେ ତୁ ପୁରୁଷୋତ୍ତମ ଅଟୁ ପରଂଯୋଗୀ
ଯଦି ଶରଣବତ୍ସଳ ଦୁଷ୍ଟ ପରିତ୍ୟାଗୀ ।
ଯଦ୍ୟପି ମୁନିଙ୍କ ହୃଦେ ଥାଉ ତୁ ଆନନ୍ଦେ
ଯଦ୍ୟପି ଏ ଚରାଚର ତୋର ଗର୍ଭେ ଉଦେ ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡେ ତୁ ଯେବେ ସତ୍ୟବାଦୀ
ସୁର ନର ମୁନିଙ୍କୁ ତୁ କରୁ ଯେବେ ସିଦ୍ଧି ।
ଯଦ୍ୟପି ପାଣ୍ଡବ ହିତେ ଥାଉ ସର୍ବକାଳେ
ମୋ ପ୍ରତି ସୁଦୟା ଯେବେ ରଖୁ ହୃଦସ୍ଥଳେ ।
ପାଣ୍ଡବ କୌରବଙ୍କର ଯେହ୍ନେ ହୁଏ ଦ୍ୱନ୍ଦ୍ୱ
ତୁ ତାହା ସର୍ଜ୍ଜନା କରି ଆସିବୁ ଗୋବିନ୍ଦ ।
ଗୋବିନ୍ଦ ବୋଇଲେ ତୁ ଗୋ ଭାରା ନିବାରିଣୀ
ରକ୍ଷନ୍ତା ଭକ୍ଷନ୍ତା ତୁହି ବଇଷ୍ଣବୀ ପୁଣି ।
ତୋହର ଯେ ଆଜ୍ଞାଗୋଟି ନିରାଧାର ମାତ୍ର
ହୋଇବ କୁରୁ ପାଣ୍ଡବ ସମର ଯଥାର୍ଥ ।
ତହୁଁ ବିଜେ କରିଗଲେ ପ୍ରଭୁ ଜନାର୍ଦ୍ଦନ
ବିଜୟ କଲେ ନକୁଳ ଶୟନର ସ୍ଥାନ ।
ମାଦ୍ରୀ ନନ୍ଦନ କେଶବ ପାଦେ ପରଣାମି
ବୋଲେ ସଂସାର ତାରଣ କିପାଁ ବିଜେ ସ୍ୱାମୀ
ଗୋବିନ୍ଦ ବୋଇଲେ ଶୁଣ ହେ କୁମରମଣି
କ୍ଷତ୍ରିକୁଳ ଭୂଷଣ ତୁ ବୀର ଚୂଡ଼ାମଣି ।
କୋନ୍ତ ମୁନରେ ଧଇଲୁ ସବୁ ସମରାସ୍ତ୍ର
ହେ କୁମର ତୋର ଅଛି ସ୍ୱର୍ଗପୁରେ ପାଟ ।
ମଧ୍ୟସ୍ଥ ପଣେ ଯାଉଛି ହସ୍ତିନା ସଭାକୁ
ଯୁଧିଷ୍ଠି ଦେବଙ୍କ ଆଜ୍ଞା ଗୋଟି କହିବାକୁ ।
ପଡ଼ା ତିନିଖଣ୍ଡ କୁରୁନାଥେ ମାଗିବଇଁ
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ଯାହା ଛନ୍ତି କହି ।
ନକୁଳ ପ୍ରଣାମକରି ବୋଲେ ନାରାୟଣ
ଯେବେ ତୁ ଗ୍ରହଣକଲୁ ମଧ୍ୟପାତ୍ର ପଣ ।
ସ୍ୱାମୀ କୁନ୍ତୀ ଗର୍ଭରୁ ସେ ଜାତ ଭାଇ ତିନି
ଇଚ୍ଛାରେ ଯେ ଯାହା ପୁଣ ମନାସିଲେ ଘେନି ।
ତୁ ଯେବେ ମଧ ପଣରେ ଯାଉ ଶିରୀରଙ୍ଗ
କାଳେ ବୋଲିବ ସେ ଭୀମ ନାହିଁ ତୋର ଭାଗ
ଆମ୍ଭେ ବଇମାତୃ ଭାଇ ଅଟୁ ଦୁଇଜଣ
ଦ୍ୱିଖଣ୍ଡ ପଡ଼ା ମାଗିବ ଆମ୍ଭ ନିମନ୍ତେଣ ।
ଗୋବିନ୍ଦ ବୋଇଲେ ଅଟେ ସେ ଦୁଷ୍ଟପ୍ରକୃତି
ଧର୍ମ ଆଶ୍ରୟ କଲେ କି ମିଳଇ ଯୁକତି ।
କର୍ଣ୍ଣ ଦୁଃଶାସନ କୂଟ କପଟୀ ଶକୁନି
ନ ପୁଣ ନ ଦ୍ୟନ୍ତି ଯେବେ ଗ୍ରାମ ଖଣ୍ଡ ବେନି ।
ଯୁଧିଷ୍ଠି ବଡ଼ ବୋଲିଣ ଦେବ ପଡ଼ାଟିଏ
ଭୀମକୁ ଗୋଟିଏ ଦେବ ତାକୁ କରି ଭୟେ ।
ଅର୍ଜ୍ଜୁନକୁ ଦେବ ସେହି ପର ଉପକାରୀ
ତୁମ୍ଭଙ୍କୁ ସେ ପଡ଼ା ଦେବ କେଉଁଗୁଣେ କରି ।
ନକୁଳ ବୋଲେ ନ ଦେଲେ ସେହୁ ବେନି ଗ୍ରାମ
ନିଷ୍ଚୟ କେଶବ ମୋର ହେବଟି ସଂଗ୍ରାମ ।
ଗୋବିନ୍ଦ ବୋଇଲେ ବାବୁ ସଂଗ୍ରାମ ତୁ କଲେ
କାହା କାହାକୁ ଜିଣିବୁ ତୋର ବାହୁବଳେ ।
ନକୁଳ ବୋଇଲା ହରି ସେ ଭାରୋଇମଲ୍ଲ
ପ୍ରଥମରେ ବିଦାରିବି ମୋ ମାତୁଳ ଶଲ୍ୟ ।
ଦ୍ୱିତୀୟରେ ସଂହାରିବି କୁମନ୍ତ୍ରୀ ଶକୁନି
ଲକ୍ଷ୍ମଣକୁମର ମେଳେ ଯେତେକ ସଇନି ।
କୃପାଚାର୍ଯ୍ୟ ଅଶ୍ୱତ୍ଥାମା ଅଟନ୍ତି ଅମର
ଏହାଙ୍କର ଯେତେ ସୈନ୍ୟ କରିବି ସଂହାର ।
ତୁ ମାତ୍ର ହରି ସଭାରେ ପାଇଆସ ଲଜ୍ଜା
କୌରବ ବଂଶ ବୁଡ଼ିବ ଜାଣ ଦେବରାଜା ।
ନକୁଳ ମୁଖୁଁ ଏମନ୍ତ ପ୍ରତିଜ୍ଞାକୁ ଶୁଣି
ବୋଇଲେ ଇନ୍ଦ୍ରାଦି ତୋତେ ନ ପାରିବେ ଜିଣି
ତହୁଁ ନକୁଳେ ପ୍ରବୋଧି ଚଳିଲେ ମାଧବ
ରାତ୍ର ଦ୍ୱିପହରେ ଭେଟ ପାଇ ସହଦେବ ।
ଯୋଗୀ ଯେହ୍ନେ ଜଗିଥାଏ ସାଧନର ପାଇଁ
ମନ୍ତ୍ରୀ ଜଗିଥିଲା କୃଷ୍ଣ ଆଗମ ଅନାଇଁ ।
କୃଷ୍ଣଙ୍କୁ ଦେଖି ହରଷ ହୋଇଲା ଅପାର
କଞ୍ଜଚରଣରେ ଯାଇ କଲା ନମସ୍କାର ।
ସହଦେବ ବାସୁଦେବ ହେଲେ ଏକାସନ
ଶୁଭାଶୁଭ ପଚାରନ୍ତି ଦେବ ଜନାର୍ଦ୍ଦନ ।
ମନ୍ତ୍ରୀବର ବୋଲେ ଦେବ ସବୁ ଶୁଭକାର୍ଯ୍ୟ
ମଧପାତ୍ରପଣ କିପାଁ ନେଲେ ଦେବରାଜ ।
କୃଷ୍ଣ ବୋଇଲେ ଆସିଲି ତହିଁର ନିମନ୍ତେ
ଯୁଧିଷ୍ଠିର ଦେବ କଲେ ମଧପାତ୍ର ମୋତେ ।

ଆହେ ମନ୍ତ୍ରୀ ତୁହି ଅଟୁ ପଣ୍ଡିତ ଧାର୍ମିକ
ଶୂରବନ୍ତ କ୍ଷମାବନ୍ତ ସର୍ବଜ୍ଞ ବିବେକ ।
ସ୍ୱାମୀ ଆଜ୍ଞା ଶିରୋଧାର୍ଯ୍ୟ ହୋଇଲା ମୋହର
କି କଥା କହିବି ଦୁର୍ଯ୍ୟୋଧନର ଆଗର ।
ତୁ ପଣ୍ଡିତ ମନ୍ତ୍ରୀ ଭୂତ ଭବିଷ୍ୟତ ଜ୍ଞାତା
ତୋର ବାକ୍ୟ ଅଭ୍ୟାସି ମୁଁ ହୋଇବି ବକତା ।
ସହଦେବ ବୋଲେ ସନ୍ଧି ତୋରଯେବେ କାର୍ଯ୍ୟ
ତୋ ଆଜ୍ଞା ଭ୍ରଷ୍ଟ କରିବ କିଏ ଦେବରାଜ ।
ଦେବ ଦାନବ କିଏ ବା ମେଣ୍ଟିବାକୁ କ୍ଷମ
ଦୁଷ୍ଟଜନଙ୍କର ଯମ ତୁ ପୁରୁଷୋତ୍ତମ ।
କୃଷ୍ଣ ବୋଇଲେ ବିଶ୍ୱାସ କରି କହେ ତୋତେ
ମହୀର ଭାରା ଉଶ୍ୱାସ ହୋଇବ କେମନ୍ତେ ।
ସହଦେବ ବୋଲେ ସ୍ୱାମୀ ଯାଅ ଯୋଗଘେନି
ଉପାୟେ ନାଶ କରାଅ କୌରବ ସଇନି ।
ଯହିଁପାଇଁ ଆମ୍ଭେମାନେ ନରରୂପେ ଜାତ
ସେହି କାର୍ଯ୍ୟ କରିବାର ଆମ୍ଭର ଉଚିତ ।
ସୁବାକ୍ୟ ତେଜିଣ ଖଳ ବଚନ କହିଲେ
ବହୁ ଅମଙ୍ଗଳ ହୁଏ ଜାଣିଥାଅ ଭଲେ ।
ପୁନରପି ବୋଲେ ଦେବ ଶୁଣ ଶିରୀରଙ୍ଗ
ନ ଦେବାର ଭଳି କରି ପଞ୍ଚଗ୍ରାମ ମାଗ ।
ଗୋବିନ୍ଦ ବୋଇଲେ ତୋତେ କହିଲି ସଂକ୍ଷେପି
କି ପଡ଼ା ମାଗିବି କହ ଜାଣୁ ତୁ ଯଦ୍ୟପି ।
ସହଦେବ ବୋଲେ ଶୁଣ ହେ ପୁରୁଷୋତ୍ତମ
କହୁଅଛି ପୁଣ ଗ୍ରାମମାନଙ୍କର ନାମ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଆବର ହସ୍ତିନା
ଜୟନ୍ତା ବରୁଣାବନ୍ତ ଏହି ପଞ୍ଚ ସିନା ।
ଗୋବିନ୍ଦ ବୋଇଲେ ଶୁଣ ମନ୍ତ୍ରୀ ଚୂଡ଼ାମଣି
ପଡ଼ାଙ୍କର ଅର୍ଥ ମୋତେ କହୁ ପରିମାଣି ।
ମନ୍ତ୍ରୀ ବୋଲେ ଇନ୍ଦ୍ର ଯେତେ ଦୂର କରେ ବୃଷ୍ଟି
ପ୍ରଥମେ ମାଗିବ ହରି ସେହି ପଡ଼ାଗୋଟି ।
ଯେତେଦୂର ପରିଯନ୍ତେ ଥାଏ କାଳପାଶି
ବୋଲିବ ଯେ ଯମପ୍ରସ୍ଥ ପାଣ୍ଡବେ ଦିଅସି ।
ତୃତୀୟେ ମାଗିବୁ ହରି ଯେ ବାରୁଣାବନ୍ତ
ଯେତେଦୂର ଯାଏ ବାୟୁ ହୁଏ ଆତୟାତ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଏ ତିନି
ପୁଣି ମାଗିବ ହସ୍ତିନା ଜୟନ୍ତା ଏ ବେନି ।
କେବଣ ପୁରରେ ଇନ୍ଦ୍ର ନ କରଇ ବୃଷ୍ଟି
ଯମଦେବ କାଳପାଶ କାହିଁ ବା ନ ଘୋଟି ।
ଯେଉଁପୁରେ ଆତୟାତ ନ ହୁଏ ପବନ
ଏହା କଦାଚ ନ ଦେବ ରାଜା ଦୁର୍ଯ୍ୟୋଧନ ।
ଏହି ବାକ୍ୟ ଶୁଣି ତୋତେ ଦୁର୍ଯ୍ୟୋଧନ ଛଳି
ଏହି ହେତୁରୁ ଅପ୍ରୀତି ହେବ ବନମାଳୀ ।
ଏହି ପଞ୍ଚସ୍ଥଳୀ ଭିନ୍ନ ଆନ ଗ୍ରାମ ନାହିଁ
ଏହାଦେଲେ କଉରବେ ରହିବେ ବା କାହିଁ ।
ନୀତିବନ୍ତ ହୋଇ ଯେବେ ଅନୀତି କହିବ
ଶୁଣିକରି ଦୁର୍ଯ୍ୟୋଧନ ହାସ୍ୟ ଯେ କରିବ ।
ମାର ବୋଲି ଆଜ୍ଞା ଦେବ ମାନଚକ୍ରବର୍ତ୍ତୀ
ସାକ୍ଷ୍ୟକରି ଆସିବୁ ତୁ ହୋଇବ ଅନୀତି ।
ନିଶୋଧନ ମନ୍ତ୍ରୀ କହୁଁ ଏସନକ ବୁଦ୍ଧି
ଶ୍ରୀ ଜଗନ୍ନାଥ ବୋଇଲେ କାର୍ଯ୍ୟ ହେବ ସିଦ୍ଧି ।
ସହଦେବ ବୋଲେ ମଧପାତ୍ର ମୁଖେ ସମ
ପୁଣିହିଁ ତାହାର ମୁଖେ ଅଛଇ ବିଷମ ।
ଶୁଣିଣ ଆନନ୍ଦ ହେଲେ ଦାନବ ଅଇରି
କହିଲେ ସହଦେବ ଯା ତାହାଙ୍କୁ ତିଆରି ।
ଏକାନ୍ତରେ କଥାବାର୍ତ୍ତା ହୁଅନ୍ତେ ସେ ବେନି
ରଜନୀ ପ୍ରଭାତ ହେଲା ଶୁଭେ ଶଙ୍ଖଧ୍ୱନି ।
ଅରୁଣ ଦେବଙ୍କ ଆଭା ଦିଶିଲା ଐଶାନ୍ୟେ
ସନ୍ଧ୍ୟା ସାରି ହରି ନିତ୍ୟକର୍ମର ବିଧାନେ ।
ଯମୁନା ନଦୀରେ ଧାର ବହଇ ତ୍ରିବେଣୀ
ଉତ୍ତରବାହିନୀ ହୋଇ ଉତ୍ତରେ ଭ୍ରମଣି ।
ନିତ୍ୟକର୍ମ ଶେଷକଲେ ହରି ପ୍ରାତଃକାଳେ
ଗନ୍ଧର୍ବ ଗିରି ପିପ୍ପଳା ନାମେ ବଟତଳେ ।
ଲମ୍ବିଅଛି ଶିର କେଶ ତ୍ରିକଚ୍ଛ ବସନ
ଶ୍ରୀକରରେ କୁଶବଟୁ ଶ୍ରୀବତ୍ସ ଲାଞ୍ଛନ ।
କନ୍ଧରେ ଉତ୍ତରୀ ନବଗୁଣରେ ପଇତା
ଏକମୁଖୀ ରୁଦ୍ରାକ୍ଷର ମାଳ ସୁଶୋଭିତା ।
ଦେବତାଙ୍କୁ ଅଗୋଚର ଯାର କୂଟବୁଦ୍ଧି
ଚଳନ୍ତି ଯେ ହୃଷୀକେଶ କଳିକି ସମ୍ବୋଧି ।
ମିଥିଳା ନଗ୍ରେ ପ୍ରବେଶ ହୋଇଲେ ଶ୍ରୀହରି
ବ୍ୟାସ ଆସୁଛନ୍ତି ଯୁଧିଷ୍ଠିଙ୍କି ଖୋଜିକରି ।
ବିଶ୍ୱାମିତ୍ର ମାରକଣ୍ଡ ବଶିଷ୍ଠ ଅଗସ୍ତି
ବାଲମୀକ ପରାଶର ଆଦି ମହାଯତି ।
ଷାଠିଏ ସହସ୍ର ଶିଷ୍ୟ ଘେନିଣ ସଙ୍ଗରେ
ନାରାୟଣଙ୍କୁ ଭେଟିଲେ ସମସ୍ତେ ସେଠାରେ ।
ଦଣ୍ଡ କମଣ୍ଡଳ ଆଦି ଥୋଇଣ ଭୂମିରେ
ବିନୟ ଭାବେ ପଡ଼ିଲେ କୃଷ୍ଣଙ୍କ ପାଦରେ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ସର୍ବେ କରି ପୂଜା
ବୋଇଲେ ତପସ୍ୱୀ ବେଶ କିପାଁ ଦେବରାଜା
ଯୁଧିଷ୍ଠି ଦେବଙ୍କ ଉଦଯୋଗ ବାର୍ତ୍ତା ଶୁଣି
ସୁବର୍ଣ୍ଣ ପଇତା ଭେଟି ସର୍ବେ ଅଛୁ ଆଣି ।

କୁହ ଧର୍ମଙ୍କର ଭେଟ ହେବ କେଉଁଠାରେ
ଏକାକୀ ଆସୁଛ କେହି ନାହାନ୍ତି ସଙ୍ଗରେ ।
ଗୋବିନ୍ଦ ବୋଇଲେ ଶୁଣ ଯୁଧିଷ୍ଠିର ରାଜ
ତାହାଙ୍କ ବୋଲରେ ମୁହିଁ ହସ୍ତିନାକୁ ସଜ ।
ପ୍ରସ୍ତାବର ବିବରଣ ଶୁଣି ମୁନିବର
ପାଞ୍ଚପଡ଼ା ମାଗିଛନ୍ତି ଧର୍ମ ନୃପବର ।
ତେଣୁ ମୁହିଁ ହୋଇଅଛି ତାହାଙ୍କର ଦୂତ
ହସ୍ତିନାପୁରେ ଯାଉଛି ହୋଇଣ ମଧ୍ୟସ୍ଥ ।
ମାର୍କଣ୍ଡ ବୋଇଲେ କୁହ କୁହ ମୁନି ବ୍ୟାସ
କୃଷ୍ଣ ସେ ସଭାରେ କିସ କରିବେ ସମ୍ଭାଷ ।
କିସ ପ୍ରତ୍ୟୁତ୍ତର ଦେବେ ମାନଚକ୍ରବର୍ତ୍ତୀ
କୁରୁ ପାଣ୍ଡବଙ୍କ ହେବ ପ୍ରୀତି କି ଅପ୍ରୀତି ।
ଶ୍ରୀ ନାରାୟଣ ବୋଇଲେ ଆସ ଆମ୍ଭ ତୁଲେ
ସୁବାକ୍ୟ ଉପୁଜେ ସିନା ଭଲ ଗୋଷ୍ଠୀ ଥିଲେ ।
ଆସ ଆସ ବ୍ୟାସ ତୁମ୍ଭେ ପ୍ରତ୍ୟକ୍ଷେ ମହାତ୍ମା
ଏ ଅଗସ୍ତି ଋଷି ପୁଣି ସାକ୍ଷାତରେ ବ୍ରହ୍ମା ।
ଶ୍ରୀ ଜଗଦାନନ୍ଦଙ୍କର ସୁଧାବାକ୍ୟ ଶୁଣି
ନାରାୟଣ ସଙ୍ଗେ ଗଲେ ସର୍ବ ତପୀମଣି ।
ହସ୍ତିନା ବାରୁଣା ଦୁଇ ନଗ୍ର ମଧ୍ୟସ୍ଥାନେ
ବହେ ସରସ୍ୱତୀ ନଦୀ ନଗର ଈଶାନେ ।
ସାମାନ୍ୟ ନଗ୍ର ଗୋଟିଏ ଅଟେ ଅଙ୍ଗଦେଶ
ସେ ନଗର ମଧ୍ୟସ୍ଥାନେ ବିଦୁରର ବାସ ।
ଆଶ୍ୱିନ କୃଷ୍ଣ ପଞ୍ଚମୀ ଅଟେ ରବିବାର
ଉତ୍ତରାଷାଢ଼ ନକ୍ଷତ୍ର ଯେ ବେଳ ଦଣ୍ଡ ତେର ।
ତୈତିଳ ନାମେ କରଣ ପ୍ରୀତି ନାମେ ଯୋଗ
ଉତ୍ତରାଷାଢ଼ର ଅନ୍ତେ ଶ୍ରବଣାର ଭୋଗ ।
କେଶବଙ୍କ ସଙ୍ଗତରେ ଛନ୍ତି ଋଷିମାନେ
ପ୍ରବେଶ ହୋଇଲେ ଯାଇ ବିଦୁର ଭବନେ ।
ଅମ୍ବୁବତୀ ସୁତ ଭୂତ ଭବିଷ୍ୟତ ଜ୍ଞାନୀ
ପୂର୍ବରୁ ଭୁବନ ସେହୁ କରିଛି ମଣ୍ଡଣି ।
କୃଷ୍ଣ ଆଗମନ ଶୁଣି ସାୟନ୍ତନୁ ନାତି
ପୁଣ ତାର ଭାର୍ଯ୍ୟା ନାମ ଅଟେ ପ୍ରିୟବତୀ ।
ଭାନୁମନ୍ତ ବୋଲି ନାମ ବିଦୁର ପୁତ୍ରଟି
କେଶବ ଚରଣେ ସର୍ବେ ପଡ଼ିଲେକ ଲୋଟି ।
ରତ୍ନଝରୀରେ ଦିଅଇ ଜଳ ତାର ପ୍ରିୟା
ପାଦ ପଖାଳେ ବିଦୁର ଭକ୍ତିପୂର୍ଣ୍ଣ ହିୟା ।
ଚରଣ ପୋଛଇ ପୁଣି ଦେବାଙ୍ଗ ବସନେ
ଷଡ଼ ଅର୍ଘ୍ୟେ ପୂଜା କଲା ବିନୟ ବଚନେ ।
ସମସ୍ତ ଋଷିମାନଙ୍କ ଚରଣ ପଖାଳି
ଅର୍ଘ୍ୟ ବନ୍ଦାପନା କଲା ଘେନି ରତ୍ନଥାଳି ।

ଋଷିଙ୍କେ ସୁବର୍ଣ୍ଣ ପୀଢ଼ା ଗୋଟିଏ ଗୋଟିଏ
ବସନ କୁଣ୍ଡଳ ମାଳା ଗନ୍ଧ ପୁଷ୍ପ ଦିଏ ।
ନାରାୟଣଙ୍କୁ ବେଢ଼ିଣ ବସିଲେ ଯେ ମୁନି
ବିଦୁର ଦଇନୀ କରେ ପୁତ୍ରଭାର୍ଯ୍ୟା ଘେନି ।
ଜୟ ଜୟ ଭଗବାନ ଭକତ ବତ୍ସଳ
ଜଳଧର ରୂପ ଅଙ୍ଗ ଦିଶଇ ସୁଢ଼ଳ ।
ସାଧୁ ମୋହର ଭୁବନ ସାଧୁ ମୋର ପୁର
ସାଧୁ ସାଧୁ ଅଟେ ସିନା ବଂଶହିଁ ମୋହର ।
ଜନ୍ମ ଜନ୍ମାନ୍ତରୁ ମୋର ଥିଲା ଯେଉଁ ଦୋଷ
ଆଜି ପଦ୍ମପାଦ ଦେଖି କଲି ତାହା ନାଶ ।
ମୋର ଭୁବନେ ପଡ଼ିଲା ତୁମ୍ଭ ପାଦରଜ
ଜନମ ସୁଫଳ ମୋର ହେଲା ଦେବରାଜ ।
ବହୁ ଅପରାଧେ ଦୋଷୀ ବାରେ ମୋତେ କ୍ଷମ
ଦେଖିଲି ଗୁଣସାଗର ଶ୍ରୀପୁରୁଷୋତ୍ତମ ।
ରାଜୀବଲୋଚନ ପ୍ରଭୁ ଅମୃତ ତୋ ଦୃଷ୍ଟି
ସମର ଦର୍ପ ଭାଙ୍ଗଇ ତୋର ନାମଗୋଟି ।
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭଇ
ପ୍ରସନ୍ନେ ମୋକ୍ଷ ଦର୍ଶନ କାର୍ଯ୍ୟ ସେ ଲଭଇ ।
ପୁଣ୍ୟଭଦ୍ରା ତୀର୍ଥେ ସ୍ୱାମୀଗଦାଧର ମୂର୍ତ୍ତି
ପିଣ୍ଡଦାତା ବ୍ୟକ୍ତିଙ୍କର ଦିଏ ମୋକ୍ଷଗତି ।
ଭାବଗ୍ରାହୀ ନାଥ ଦାସବତ୍ସଳ ହେ ସ୍ୱାମୀ
ନବ ବିକଚ କଦମ୍ବ ମାଳା ହୃଦେ ଲମ୍ବି ।
ବାଳକାଳେ ପୂତନା ଯାମଳାବୃକ୍ଷ ଭଞ୍ଜା
ଷଣ୍ଢା ଶକଟା ଦୈତ୍ୟଙ୍କ ଅଟେ ଦର୍ପଗଞ୍ଜା ।
ଘୋରମୁଖ ରାଜମୁଖ ବକା ଯେ ପ୍ରଳମ୍ବା
ଚାଣୁର ମୁଷ୍ଟିକ ଦୈତ୍ୟ ଅମ୍ବା ଯେ କଦମ୍ବା ।
ଅଙ୍ଗୁଳିରେ ଧରିଅଛ ଗୋବର୍ଦ୍ଧନ ମେରୁ
କାଳିଆ ନାଗର ଦେବ ଗଞ୍ଜିଲୁ ତୁ ଫେରୁ ।
ସ୍ୱାମୀ କାଳ କାଳାନ୍ତକ ମୂରତି ପ୍ରକାଶି
କିଞ୍ଚିତେ ନାଶିଲୁ ପ୍ରାଣ ଦୈତ୍ୟ କଂସକେଶୀ ।
କାଳଦମନ ନାରକା ଜରା ଆଦି ଧ୍ୱଂସି
ଦନ୍ତବକ୍ର ଶିଶୁପାଳ କାଳନେମି ନାଶି ।
ବକ୍ରନାଭ ଯେ ସୁନାଭ ବାଣା ସସ୍ରଭୁଜ
ହିରଣାକ୍ଷ ବିଦାରିଲୁ ତୁହି ଦେବରାଜ ।
କୁମ୍ଭ ନିକୁମ୍ଭ ଦୈତ୍ୟଙ୍କ ତୁହି ପ୍ରାଣଧ୍ୱଂସା
ଭକତବତ୍ସଳ ନାଥ ପୂରାଅ ମନୀଷା ।
କଉତୁକେ ନନ୍ଦପୁରେ ନାମ ଯେ କହ୍ନାଇ
ବାହେ ବାଙ୍କୁ ଶିରେ ଚୂଳ ମୁଖେ ବେଣୁବାଇ ।
ଭୋଳ ବାଳକ ପରାୟ ଦେଖିଣ ବିରଞ୍ଚି
ବତ୍ସା ହରି କମଣ୍ଡଳୁ ମଧ୍ୟେ ତାହା ସଞ୍ଚି ।

ରାଧା ଘେନି କୁତୂହଳେ ଥିଲେ ଦେବହରି
ବିମାନେ ବସ୍ତାଙ୍କୁ ଧାତା ଥାଏ ଯତ୍ନକରି ।
ରାଧା ବିଜେ କରିଗଲେ ଆପଣାର ପୁରୀ
ସନ୍ଧ୍ୟା ଅବକାଶେ ହରି ଲୋଡ଼ିଲ ବାଛୁରୀ ।
ଯମୁନାର ତୀର କୁଞ୍ଜ ମାଧବୀର ଲତା
କାହିଁଗଲେ ବସ୍ତା କେହି ନୋହିଲେ ଦେଖନ୍ତା ।
ଗାଈ ହମ୍ବାରବ ଦେଲେ ବସ୍ତାଙ୍କୁ ନ ଦେଖି
ସ୍ତନ ଭାରରେ କାନ୍ଦନ୍ତି ଗୋଗୋଷ୍ଠ ଉପେକ୍ଷି ।
ଲୋଡ଼ନ୍ତେ ଗୋପାଳମାନେ ଧାଇଁଆସେ ନନ୍ଦ
ଉଚ୍ଚସ୍ୱରେ ଡାକ ଦିଏ କେଣେ ରେ ଗୋବିନ୍ଦ ।
ଯମୁନା ତଟରେ ବୁଲି ବସ୍ତାଙ୍କୁ ନ ପାଇ
ନିଜ ମନ୍ଦିରକୁ ହରି ଆସୁଥିଲେ ଧାଇଁ ।
ନନ୍ଦ ଡାକନ୍ତେ ଦେଖିଣ ବଟବୃକ୍ଷ ତଳେ
ବୋଲେ ବସ୍ତାଙ୍କୁ ଛାଡ଼ିଲୁ କାହିଁ ଏତେବେଳେ
ଗାଈଙ୍କ ବିକଳ କିଏ ସହିବରେ ସହୁ
ମହାକୋପ ହେଲା ନନ୍ଦ ଏହା କହୁଁ କହୁଁ ।
କଂସର ନିଯୋଗ ହେବ ସସ୍ରେଭାର ଦୁଧ
କାହୁଁ ଭିଆଇବି ଏବେ ପଡ଼ିଲା ପ୍ରମାଦ ।
ରାଗେ ମହାଖୁଡ଼ ନେତ୍ରୁ ଲୁହ ପଡ଼େ ଫୁଟି
କୋପେ ବାମକରେ ଧରେ କେଶବଙ୍କ ଚୁଟି
ରାଗେ ମହାଖୁଡ଼ ନେଇ ତେନ୍ତୁଳିର ଡାଙ୍ଗେ
ପ୍ରହାର କଲେ କହ୍ନାଇ ତାକୁ ତୋର ଅଙ୍ଗେ ।
ଛାଟ ବଜାନ୍ତେ ଦେହରେ ରୁଧିର ପ୍ରକାଶ
ବିକଳେ କାନ୍ଦନ୍ତେ ତୋର ଛାଡ଼ିଦେଲା କେଶ
ତୋତେ ମାରି ମହାଖୁଡ଼ ବସ୍ତା ଖୋଜେ ଯାଇ
ବସ୍ତାଙ୍କୁ ଖୋଜିଲୁ ତୁହି ଧ୍ୟାନରେ ଲଗାଇ ।
ଦେଖିଲୁ ଧାତା ବିମାନେ ବସ୍ତାଙ୍କର ପଲ
ବୋଇଲୁ ତୁ ଧାତା କିଛି ନ କରିଲୁ ଭଲ ।
ଗୋପାଳୁଣୀ ସଙ୍ଗେ କରୁଥିଲି ତହିଁ ଖେଳ
ବିଡ଼ିବା ପାଇଁ ହରିଲୁ ମୋର ବସ୍ତାପଲ ।
ଏଡ଼େ କଠୋର ହୋଇଲୁ ପିତାମହ ମୋତେ
ନନ୍ଦ ପିଟୁଅଛି ପୁଣି ତାର ଜ୍ଞାନ କେତେ ।
ନନ୍ଦ ଦୋଷ ନାହିଁ ଦଣ୍ଡ ଦେଲୁ ତୁ ଝିଙ୍ଗାସି
ଏ ମଧପୁରେ ଅପୂଜ୍ୟ ହୋଇଥାଅ ବସି ।
ବିଦୁର ବୋଲେ ଏ କୃତ୍ୟ କଲୁ ଦେବରାଜ
ଏହି ବାକ୍ୟପାଇଁ ବ୍ରହ୍ମା ହୋଇଲେ ଅପୂଜ୍ୟ ।
ନବ ସୃଷ୍ଟିର କରତା ଯେବଣ ପୁରୁଷ
ତାହାକୁ ହିଁ ଶାପଦେବା ବିହିଲୁ ଅବଶ୍ୟ ।
ଏ ଦ୍ୱାପର ଲୋକଙ୍କର ସାଧୁ ଜୀବନଟି
ଚର୍ମନୟନେ ଦେଖନ୍ତି ତୋ ପାଶରେ ଭେଟି ।
ଜଗତଜନଙ୍କ ହିତେ ଜଗନ୍ନାଥ ନାମ
ତୋତେ ସ୍ତୁତି କରିବାକୁ ମୁଁ ନୁହଁଇ କ୍ଷମ ।
ଅଜ୍ଞାନୀଜନର ନାଥ ତୁହି ଜ୍ଞାନଦାତା
ଏ ଘୋର ଭବବନ୍ଧନୁ ଏକା ଉଦ୍ଧାରନ୍ତା ।
ତୁହି ତାତ ତୁହି ମାତ ତୁ ଗୁରୁ ଦେବତା
ତୁ ଅଟୁ ସର୍ବ ସୋଦର ଜଗତ କରତା ।
ଯାବତ ଏ ଚନ୍ଦ୍ର ସୂର୍ଯ୍ୟ ତାରା ଗ୍ରହ ଥିବ
ଜଗନ୍ନାଥ ନାମ ଗୋଟି ସର୍ବଦା ରହିବ ।
ତୁଳସୀ ବଲ୍ଲଭ ପାଦେ ସର୍ବଦା ମୋ ଆଶ
ଏ ଶୂଦ୍ରମୁନି ଶାରଳା ଜନ୍ମେ ଜନ୍ମେ ଦାସ ।



## ଶ୍ରୀକୃଷ୍ଣଙ୍କର ବିଦୁର ମନ୍ଦିରରେ ଅବସ୍ଥିତି ଓ ବିଦୁରକୁ ବରଦାନ

ବିଲଙ୍କା ରାଜା ପୁଚ୍ଛିଲେ ଅଗସ୍ତି ମୁନିଙ୍କୁ
କୃଷ୍ଣ ବିଜେ କରିଗଲେ ବିଦୁର ଗୃହକୁ ।
ସେହି ସ୍ଥାନେ ଥାଇ ପୁଣି କଲେ କେଉଁ କୃତ୍ୟ
ସେ କଥା ଶୁଣିବାପାଇଁ ବଳଇ ମୋ ଚିତ୍ତ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଯେଉଁପରି କଥା ହେଲା କରୁଛି ଗାୟନ ।
ଅନେକ ବାଗେ ବିଦୁର ସ୍ତୁତିବାକ୍ୟ ଭଣି
ବହୁତ ସନ୍ତୋଷ ହେଲେ କୃଷ୍ଣ ତାହା ଶୁଣି ।
ବାଳଲୀଳାର ଚରିତ କରନ୍ତେ ପ୍ରକାଶ
ବିଶେଷ ଭାବେ ପ୍ରସନ୍ନ ହେଲେ ହୃଷୀକେଶ ।
ଲିଆ ମୁଆଁ ଲଡୁ ଦୁଧ ସରର ପାପୁଡ଼ି
ପଞ୍ଚାମୃତ ଆଦି ସେହି ସ୍ଥାନେ ସ୍ଥାନେ ବାଢ଼ି ।
ଦୁଗ୍ଧ ସହିତେ ନବାତ ଖଣ୍ଡ ମିଶ୍ର କରି
ଅମୃତ ପାଣି କଦଳୀ ଗୁଟିକାରେ ଭରି ।
କାଞ୍ଚନ ଝରି ଭିତରେ ସୁବାସିତ ପଣା
କର୍ପୂର ବାସରେ ମନ ହୋଇଯାଏ କିଣା ।
କୁମୁଦ ବେଣ୍ଟ ଗୁଡ଼ାଏ ନଡ଼ିଆ ଗୁଡ଼ାଏ
କୌତୁକେ ମଣୋହି କଲେ ତହିଁ ଦେବରାୟେ
କର୍ପୂର ତାମ୍ବୁଳ ଦେଲେ ଭୋଜନ ଶେଷରେ
ଗନ୍ଧ କସ୍ତୁରୀ ଲେପିଲେ ତାହାଙ୍କ ଶରୀରେ ।
ଜାଈ ଯୁଇ ମଲ୍ଲୀ ଚମ୍ପା କେତକୀ ଦୟଣା
ବକୁଳ ଟଗରପାଦ ଆବର କରୁଣା ।
ସୁବାସିତ କୁସୁମରେ ବାନ୍ଧି ଦେଲେ ଗଭା
ଗଳେ ତୁଳସୀର ମାଳା ଦେଉଁ ଦିଶେ ଶୋଭା
ଏହି ଭାବରେ ବିଦୁର କୃଷ୍ଣଙ୍କୁ ପୂଜିଲା
ଉତ୍ତମ ଭୋଜନେ ଋଷିମାନଙ୍କୁ ମୋହିଲା ।
ବୋଇଲେ ହରି ବିଦୁର ଆଶ୍ଚର୍ଯ୍ୟ ବିଷୟ
ଆଗହୁଁ କି ସଞ୍ଚିଥିଲୁ ଏହି ସମୁଦାୟ ।

କୃଷ୍ଣାଜିନ ସୁନା ପୀଢ଼ା ପୁଣି ସୁନା ଝରି
ଏହା ତୁ ସଞ୍ଚିଲୁ ଆଣି କି ଉପାୟ କରି ।
ବିଦୁର ବୋଇଲା ସ୍ୱାମୀ ଥିଲି ମୁହିଁ ଜାଣି
ମଧ୍ୟ ପାତ୍ରରେ ଆସିବ ତୁମ୍ଭେ ଚକ୍ରପାଣି ।
ସଙ୍ଗତେ ଆସିବେ ପୁଣି ମୁନିଙ୍କ ସମାଜ
ତାହା ଜାଣି ସଞ୍ଚିଥିଲି ମୁହିଁ ଦେବରାଜ ।
ସଂସାରରେ ଭକ୍ତିଭାବେ ସେବେ ଯେ ସୁସ୍ନେହେ
ସଞ୍ଚାଦ୍ରବ୍ୟ ଅକାରଣ ନ ହୁଏ କେବେହେଁ ।
ଗୁଣସାଗର ନାଥ ତୁ ପରିମାଣି ବୁଝ
ଅଦାତବ୍ୟ ପୁରୁଷଙ୍କ ସମ୍ପତ୍ତିହିଁ ବୋଝ ।
ସୁଭୂମିରେ କୃଷି ଜାତ ଯାହାର ସୁଗୋଷ୍ଠୀ
ସୁସ୍ତିରୀ ପ୍ରସଙ୍ଗ ଯାର ସୁଦେବତା ଦୃଷ୍ଟି ।
ସୁପଦାର୍ଥ ସୁଭୋଜନ ଯା ସୁପୁତ୍ର ଥାଏ
ସୂର୍ଯ୍ୟଦେବତାଙ୍କୁ ଯାର ହୃଦଗତେ ଲୟେ ।
ସୁମନ୍ତ୍ରୀ ସୁବିଧାନେ ଯେ ସୁପଥରେ ଚଳି
ଏତେ ଲୋକଙ୍କ ବାନ୍ଧବ ଅଟୁ ବନମାଳୀ ।
କୁସ୍ଥାନରେ ବାସ କୁଳହୀନେ ଯାର ସେବା
କୁ ସ୍ତ୍ରୀ ସହିତ ବାସ କୁଦ୍ୱିଜେ ଦାନଦେବା ।
କୁବୁଦ୍ଧି କୁମନ୍ତ୍ରୀ ସହ ଚଳେ ଯେଉଁ ଜନ
ନରକକୁ ପୁନଃ ପୁନଃ କରଇ ଗମନ ।
ସ୍ୱାମୀ ସଂସାର ସାଗର ଅପାର ଗଭୀର
ଲୋଭ ମୋହ ଅହଂକାରେ ଦଣ୍ଡେ ନାଶକର ।
ଅଦଉଡ଼ିରେ ବନ୍ଧନ ଏ ସଂସାର ମାୟା
ଜଳବିମ୍ବ ପରାୟେକ ମନୁଷ୍ୟର କାୟା ।
କୃଷ୍ଣ ବୋଇଲେ ବିଦୁର ତୁହି ସର୍ବଜ୍ଞାତା
ଯେତେକ କହିଲୁ ମୋତେ ସବୁ ତତ୍ତ୍ୱକଥା ।
ବହୁତ ବିନୟୀ ହୋଇ ସେବାକଲୁ ମୋର
ତୃପତି ଭଜିଲି ମୁହିଁ ଏବେ ମାଗ ବର ।
ବିଦୁର ବୋଇଲା ଦେବ ଏକ ରମ୍ଭା ଅଛି
ପ୍ରସନ୍ନ ହୋଇଣ ନାଥ ତହୁଁ ଭୁଞ୍ଜ କିଛି ।
ଭୋଜନରେ ଜୀର୍ଣ୍ଣକାଳ ହୋଇଲାକ ଯହୁଁ
ଅମୃତପଣା କଦଳୀ ଭକ୍ତ ଆଣେ ତହୁଁ ।
ଚୋପା ଛଡ଼ାଇ ଦିଅଇ କେଶବଙ୍କ ହସ୍ତ
ଅତି ଶ୍ରଦ୍ଧାରେ ଭୁଞ୍ଜନ୍ତି ଦେବ ଜଗନ୍ନାଥ ।
ପ୍ରେମ ପୁଲକେ ବିଦୁର ଦିଅଇ ବଢ଼ାଇ
ଭୁଞ୍ଜନ୍ତି ଶ୍ରୀ ନାରାୟଣ ଅତି ତୋଷ ହୋଇ ।
ଭୋଳ ହୋଇଲା ବିଦୁର ନ ରହିଲା ଜ୍ଞାନ
କଦଳୀ ପକାଇ ଚୋପା କରଇ ପ୍ରଦାନ ।
ତା ଦେଖି ହରହର୍ଷିତ ହୋଇଲେ କେଶବ
ଜାଣି ପାରିଲେ ବିଦୁର ଅନ୍ତର୍ଗତ ଭାବ ।

ଚେତା ହୁଅନ୍ତେ ବିଦୁର ମହାଭୟ ପାଇ
ପଞ୍ଚଘୁଞ୍ଚା ଦେଇ ପାଦେ ପଡ଼ିଲାକ ଶୋଇ ।
ବୋଇଲା ଅପ୍ରାଧ କଲି ମୁଁ ପାପିଷ୍ଠ ମନ୍ଦ
ଚକ୍ରପେଷିଣ ମୋହର ଶିର ଏବେ ଛେଦ ।
ତରସ୍ତ ହୋଇ ବିଦୁର କାତରେ କମ୍ପଇ
ଉଠ ଉଠ ବୋଲି ଡାକ ଦ୍ୟନ୍ତି ଯଦୁସାଇଁ ।
ଆସ ଆସ ବିଦୁର ତୁ ମୋହର ଭକତ
ତୋର ମନୋବାଞ୍ଛା ଆଜି କରିବି ତୃପତ ।
ବରମାଗ ବିଦୁରରେ ତୋର ମନୋବାଞ୍ଛା
ବୈକୁଣ୍ଠପୁରକୁ ଦେବି ଯେବେ ତୋର ଇଚ୍ଛା ।
ବିଦୁର ବୋଇଲା ଦେବ କିଞ୍ଚିତ ଭକତେ
କିଞ୍ଚିତ ସେବାରେ କିସ ମାଗିବି ମୁଁ ତୋତେ ।
ଗୋବିନ୍ଦ ବୋଇଲେ ଜାଣ ମନ ସିନା ମୂଳ
ସେବା କରିଲେ କି କେବେ ହୁଏ ସେ ନିଷ୍ଫଳ ।
ବିଦୁର ବୋଇଲା ମୁହିଁ ନୁହେଁ ଏଡ଼େ ସରି
ଯେବେ ତୁ ପ୍ରସନ୍ନ ମୋତେ ହେଲୁ ଦେବହରି
ନିଶ୍ଚୟ ସଂକଳ୍ପ ଯେବେ ବର ମୋତେ ଦେବ
ପୁତ୍ର ପୌତ୍ରାଦିରେ ପୂର୍ଣ୍ଣ ମୋର ପୁର ହେବ ।
ହେ ପ୍ରଭୁ ଯଦ୍ୟପି ମୋତେ ହୋଇଲ ପ୍ରସନ୍ନ
ମୋ ପୁରେ ଆସୁଥିବେ ନିତ୍ୟେ ବନ୍ଧୁଜନ ।
ମନ୍ଦିର ଗହଳ ହେବ ଦ୍ୱିଜ ଆଗମନେ
ପୂର୍ଣ୍ଣ ହୋଇଥିବ ଗୃହ ରନ୍ଧନ ଭୋଜନେ ।
ଧେନୁବତ୍ସା ପୂର୍ଣ୍ଣହେବେ ଗୋଶାଳେ ମୋହର
ପୁଣି ସେମାନେ ହୋଇବେ ନିରୋଗ ଶରୀର
ଘୃତାନ୍ନ ଗୋରସ ନିତ୍ୟ କରିବି ଭୋଜନ
ଅଦାତବ୍ୟ ପଣ ମୋର ନୋହୁ ଜନାର୍ଦ୍ଦନ ।
ଜନ୍ମ ହୋଇଲେ ଅବଶ୍ୟ ନାଶ ଯାଇ କାୟେ
ପ୍ରୟାଗ ବେଣୀ ପ୍ରାପତ ହେବ ଦେବରାୟେ ।
ଶୁଣିକରି ହସିଲେ ଯେ ଦେବ ପୀତବାସ
ବୋଇଲେ ସବୁ ମାଗିଲୁ ନ ମାଗିଲୁ କିସ ।
ବିଦୁର ବୋଇଲେ ଦେବ ପାପ ପରିତ୍ୟାଗୀ
ଅବଧାନ ହୁଅ ଯାହା ନ ପାରିଲି ମାଗି ।
ଦରିଦ୍ରତା ନ ମାଗିଲି ପୁଣି କ୍ରୋଧ ହିଂସା
ପରେ ପ୍ରାଭବ ଦେବାକୁ ନ ବଳେ ମନୀଷା ।
ଆଦେଶରେ ଜନ୍ମ ମୋର ନୋହୁ ନାରାୟଣ
ଦେବତା କି ଅବା ହେଉ ଅଥବା ବ୍ରାହ୍ମଣ ।
କାଶୀନଦୀଠାରୁ ରୁଦ୍ରନଦୀ ପରିଯନ୍ତେ
ଚଣ୍ଡାଳ ଯୋନିରେ ପଛେ ଜନ୍ମାଇବୁ ମୋତେ
ଭକତି କରିଣ ଦେବ ମାଗୁଅଛି ଯାହା
ପ୍ରସନ୍ନରେ ନାରାୟଣ ଦିଅ ମୋତେ ତାହା ।

ଅଗତିରେ ଜନ୍ମ ମୋତେ ନ କରି ଗୋସାଇଁ
ଅପୁତ୍ର ଲକ୍ଷଣ ଦେବ ନ ମାଗିଲି ମୁହିଁ ।
ଅଭକ୍ତଗୋଷ୍ଠୀ ନ ଦେବୁ ମୋତେ ଜଗନ୍ନାଥ
ଅସୁର ଭୋଗ୍ୟର ତୀର୍ଥ ନ କରା ପ୍ରାପତ ।
କେତେ ଜଞ୍ଜାଳ କରିବି ତୋତେ ଦେବହରି
ନାରାୟଣ ନାମ ଥିବ ହୃଦରେ ମୋହରି ।
ଜଗନ୍ନାଥଙ୍କ ଭକ୍ତକୁ ସଦା ମିଳେ ଯାହା
ସଂସାରଜନଙ୍କୁ ଦେବ ପ୍ରାପ୍ତ କର ତାହା ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ନ ଜାଣଇ ଭକ୍ତି ସ୍ତୁତି ତୁମ୍ଭଙ୍କୁ କହୁଛି ।
ବିଦୁର ହୃଦଗତରେ ବାଞ୍ଛା କଲା ଯାହା
ତଥାସ୍ତୁ ବୋଲି କହିଲେ ତାକୁ ଚଉବାହା ।
ମୁକ୍ତିକି କାରଣ ସେହି କୃଷ୍ଣ ନାମ ଗୋଟି
ଯାହାର ଦର୍ଶନେ ସବୁ ଦୋଷଯାଏ ଫିଟି ।
ଭାରତର ଉଦଯୋଗ ପର୍ବ ଅଟେ ସାର
ଶ୍ରୀବ୍ୟାସଦେବ ମୁଖରେ ଯା କଲେ ପ୍ରଚାର ।
ସବୁ ତ୍ୟାଗ କରି ନରେ ଅଧ୍ୟୟନ କର
ଚତୁବର୍ଗଫଳ ପ୍ରାପ୍ତ ହେବ ନିରନ୍ତର ।
ସବୁ ଛାଡ଼ି ଜଗନ୍ନାଥ ନାମେ କର ଭେଳା
ମୁକ୍ତିପଦ ପ୍ରାପ୍ତ ହେବ କହଇ ଶାରଳା ।



## କୁନ୍ତୀ ଓ ଶ୍ରୀ କୃଷ୍ଣଙ୍କର କଥୋପକଥନ ଶ୍ରୀକୃଷ୍ଣ ଧୃତରାଷ୍ଟ୍ର ନିକଟେ ପ୍ରବେଶ ଓ ଅନ୍ଧ ବ୍ରାହ୍ମଣଙ୍କୁ ଚକ୍ଷୁଦାନ ବିବରଣ

ଏଥୁଅନ୍ତେ ଚଇତନ ମୁନିଙ୍କି ପୁଛିଲା
ଅଳ୍ପ ଭକ୍ତିରେ ବିଦୁର ବହୁ ବାଞ୍ଛା କଲା ।
ବିଦୁର ଘରେ ରହିଲେ ଦେବ ଭାବଭୋଳା
ଦିନ ହେଲା ଆସି ଚତୁର୍ଦ୍ଦଶ ଘଡ଼ି ବେଳା
ଯେଉଁକାଳେ ଯୁଧିଷ୍ଠିର ଅରଣ୍ୟକୁ ଗଲେ
କୋଇନ୍ତା ଦେବୀ ବିଦୁର ମନ୍ଦିରେ ରହିଲେ ।
ଶ୍ରୀକୃଷ୍ଣ ବିଜୟ କଲେ ବିଦୁର ଭବନ
କୋଇନ୍ତା ସଙ୍ଗେ ହେଲା କି କଥୋପକଥନ ।
ସେହିଁ କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ନାରାୟଣଙ୍କ ଆଗମ ଶୁଣି କର୍ଣ୍ଣପଥେ
କୋଇନ୍ତା ଦେବୀ ମନ୍ଦିରୁ ଆସିଲେ ତୁରିତେ ।
ଜଗତଜୀବନ ନାଥ ତାହାଙ୍କୁ ନିରେଖି
ଅତି ବେଗରେ ଉଠିଲେ ଆସନ ଉପେକ୍ଷି ।
ବିନୟ ଭାବରେ କୃଷ୍ଣ ହେଲେ କୃତାଞ୍ଜଳି
ଦେଖି ମହାଶୋକ କଲେ ଭୋଜର ଦୁଲାଳୀ
ତହୁଁ ସେ ବୋଇଲେ କୋନ୍ତଭୋଜର ଦୁହିତା
ଭୋ କେଶବ ଦେଖ ତୁହି ମୋହର ଅବସ୍ଥା ।
ବାବୁ ଅତି ଭାଗ୍ୟବତୀ ଅଟଇ ଗାନ୍ଧାରୀ
କୁଳ ଅନୁରୂପେ ପୁତ୍ର ଅଛି ଜାତକରି ।
ଗୋଲକ ବୃକ୍ଷ ବିବାହ ହେଲା ବାଲ୍ୟକାଳେ
ବ୍ୟାସ ଥାଇ ଧୃତରାଷ୍ଟ୍ରେ ଦେଲେ ଯୋଗବଳେ
କୃତ୍ତିକା ବୃଷରେ ଜାତ ସେ ବ୍ରହ୍ମଅସୁରୀ
ଜ୍ୟେଷ୍ଠ ଅମାବାସ୍ୟା ଦିନ ଅଛି ଅବତରି ।
ଦେଖ ହରି ତାର ପୁତ୍ର କୁଞ୍ଜଗଳ ରାଜା
ଅମରାଧିନାଥ ପ୍ରାୟେ ପାଉଅଛି ପୂଜା ।
ଦୁର୍ବାସା ପ୍ରସାଦେ ପାଇଅଛି ଜପାମାଳି
ପଣ୍ଡୁ ରାଜା ଭାର୍ଯ୍ୟା ମୁହିଁ ଭୋଜର ଦୁଲାଳୀ ।
ସ୍ୱାମୀ ଧର୍ମଅଂଶେ ଜାତ ହୋଇଲା ଯୁଧିଷ୍ଠି
ପବନ ଅଂଶରେ ହେଲା ଭୀମ ପୁତ୍ର ଗୋଟି ।
ଇନ୍ଦ୍ର ଅଂଶେ ଜାତ ହେଲା ମୋର ଫାଲ୍‌ଗୁନି
ଦ୍ୱିତୀକୃଷ୍ଣ ନାମ ଦେଲୁ ତାକୁ କୋଳେ ଘେନି ।
ନକୁଳ ସହଦେବ ଯେ ଅଶ୍ୱିନୀର ଚାଟ
ସେହି କୁମାରଙ୍କ ଅଛି ଆକାଶରେ ପାଟ ।
ହରି ଏମନ୍ତ ଶୁଭରେ ପୁତ୍ର କଲି ଜାତ
ସେ ପୁତ୍ରେ ହୋଇଲେ ଷଣ୍ଢତିଳ ବୃକ୍ଷବନ୍ତ ।
ସିଂହ ହୋଇ ଶୃଗାଳରେ ହେଲେ ସେହୁଗଣ୍ୟ
ଭିକ୍ଷା ମାଗି ବଞ୍ଚୁଛନ୍ତି ଯେହ୍ନେ ଭିକ୍ଷୁଜନ ।
ହେ ହରି କୋନ୍ତ ପଡ଼ିଣ ମୋର ଦେହ ଛିଡୁ
ଏ ଦେହ ବିଧ୍ୱଂସ ହେଉ ପେଟ ମୋର ପୋଡୁ
ହରି ଏମନ୍ତେ ବଞ୍ଚନ୍ତି ସେହୁ ପାଞ୍ଚଜଣ
କହ କେତେ ଦିନ ଥିବେ ଏମନ୍ତ ହୋଇଣ ।
ହରି ହେ ଗହନ ବନେ କନ୍ଦମୂଳ ପାଇଁ
ଆହାର ନିମନ୍ତେ ବନେ ବୁଲନ୍ତି କି ଯାଇ ।
କି ଅବା ବନସ୍ତେ ପଡ଼ି ମୋର ପୋଏ ମଲେ
ଚିହ୍ନବର୍ଣ୍ଣ ନ ପାଇଲି ସର୍ବେ କେଣେ ଗଲେ ।
ଅପୁତ୍ରିକୀ କିପାଁ ମୋତେ ବିଧାତା ନ କଲା
ପୁତ୍ରଙ୍କର କଷ୍ଟ ଦେଖି ଏ ପ୍ରାଣ ନ ଗଲା ।
ଏତେବୋଲି ଦେବୀ ତହୁଁ ଶୋକେ ମହୀଲୋଟି
କେଣେ ଗଲେ ମୋର ଅନ୍ଧଲଉଡ଼ି ପାଞ୍ଚୋଟି ।
ବନେ ପଶି କନ୍ଦମୂଳ କ୍ଷୁଧାରେ ଭକ୍ଷନ୍ତି
ଯେବେ ଆହାର ନ ମିଳେ ଉପାସେ ରହନ୍ତି ।
ଗଲେ ସେ ବିଦୁର ଘରେ ଛାଡ଼ିଦେଇ ମୋତେ
ଆଧାର ନିମନ୍ତେ ଅବା ଖାଇଲେ ଦଇତ୍ୟେ ।
ଗୋବିନ୍ଦ ବୋଇଲେ ମାତ ଧୈର୍ଯ୍ୟଧର ଚିତ୍ତେ
ଅକାରଣେ ଅସାକ୍ଷମ କାହାର ନିମନ୍ତେ ।

ପୁତ୍ରେ ତୋହର ବଞ୍ଚିଲେ ଥାଇ ଘୋରବନେ
ସତ୍ୟ ପ୍ରତିପାଳି ଦିନ ନେଲେ ବହୁପୁଣ୍ୟେ ।
ଅନେକ ଦାନବଙ୍କୁ ଗୋ ମାଇଲେ ସମରେ
ମହୀଭାରା ଉଶ୍ୱାସିଲେ ତୋହର କୁମରେ ।
ଅନ୍ଧକକୁ ବଧ କଲା ନକୁଳ କୁମାର
ଲୌହାସୁର ବଧ କଲା ସହଦେବ ତୋର ।
ନିର୍ବାତ କବଚ ଧୂମ୍ର ଲୋଚନର ନାତି
ଜମ୍ଭୁ ଦଇତ୍ୟର ସେହି ଅଟଇ ସନ୍ତତି ।
ଆକାଶରେ ନିରୋଧିଲା ଯାଇ ବାରସ୍ୱତୀ
ଭୟପାଇ ତେଜ୍ୟା କଲେ ସ୍ୱର୍ଗ ସୁରପତି ।
ମାଗୋ ଚୌରାଅଶୀ ବେଳ ଧାଡ଼ିଦେଲା ସ୍ୱର୍ଗେ
ବହୁଧନ ରତ୍ନ ଚୁର କଲା ଦୈତ୍ୟ ରାଗେ ।
ବିଦୁର ବୋଇଲା ଦେବ ନିର୍ବାତକବଚ
ସହସ୍ରାକ୍ଷର ହୋଇଲା କିପାଁ ଐରିପକ୍ଷ ।
କୃଷ୍ଣ ବୋଇଲେ ମହିଷା ବଧ ହେବା କାଳେ
ଧୂମ୍ର ଲୋଚନ ମରିଲା ଦୁର୍ଗା କୋପାନଳେ ।
ଜମ୍ଭ ଦଇତ୍ୟ ବୋଲିଣ ତାର ନିଜ ସୁତ
ସେ ପୁଣି ମନ୍ଥନ କଲା ଯାଇ ଦେବତା ତ ।
ଇନ୍ଦ୍ର ଦେବତା ତାହାକୁ ରଣେ ନାଶ କଲା
ତେଣୁ ଇନ୍ଦ୍ର ଜମ୍ଭଭେଦୀ ନାମକୁ ବହିଲା ।
ଜମ୍ଭଦୈତ୍ୟ ପୁତ୍ର ବଜ୍ର କବଚ ଦଇତ୍ୟ
ଅମର ନିରୋଧ କଲା ଆସିଣ ତ୍ୱରିତ ।
ଇନ୍ଦ୍ର ତାକୁ ନାରାୟଣ ହସ୍ତେ ମରାଇଲା
ନିର୍ବାତ କବଚ ନାମେ ପୁତ୍ର ଉପୁଜିଲା ।
ପିତୃ ପିତାମହଙ୍କର କଥା ମନେ ଧରି
ଚଉରାଶୀ ଥର କଲା ସ୍ୱର୍ଗେ ହୁରିଜୁରି ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଆବର ବହନି
ଦଶଦିଗପାଳ ଆଦି ଜିଣିଲାକ ପୁଣି ।
ବୃହସ୍ପତି କହିଦେଲେ ମୃତ୍ୟୁଭେଦ ତାର
ଅର୍ଜ୍ଜୁନକୁ ଘେନିଗଲେ ମାତଳି ସତ୍ୱର ।
ପଞ୍ଚଷଠି କୋଟି ସୈନ୍ୟ ତାର ସଙ୍ଗେ ଥିଲେ
ଏକ ଦିବା ରାତ୍ରକରେ ଅର୍ଜ୍ଜୁନ ନାଶିଲେ ।
ହିରଣ୍ୟକବଚ ନାମେ ତାର ପୁତ୍ର ଥିଲା
ଦିଗମ୍ବର ବେଶେ ଯୁଧିଷ୍ଠିଙ୍କର ହରିନେଲା ।
ପୁଣିହିଁ ସମରେ ତାକୁ ବଧିଲାକ ପାର୍ଥ
କୌରବ ଘୋଷଯାତ୍ରାରେ ଜିଣେ ଚିତ୍ରରଥ ।
ଦୁର୍ଯ୍ୟୋଧନକୁ ଗନ୍ଧର୍ବ ନେଲା ବନ୍ଦିକରି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ପଳାଇଲେ ଡରି ।
ଦୁର୍ଯ୍ୟୋଧନେ ବାନ୍ଧିକରି ନେଲା ଚିତ୍ରରଥ
ଚଳେ ନିର୍ଭୟେ ପଞ୍ଚାଶ ସସ୍ରଯୁଣ ପଥ ।

ମାଗୋ ଏବେ ଜାଣ ତୋର ପୁତ୍ର ମହିମାଟି
ଦୁର୍ଯ୍ୟୋଧନ ପାଇଁ ଯୁଦ୍ଧ କରିଲା କିରୀଟି ।
ଚିତ୍ରସେନ ଗନ୍ଧର୍ବଙ୍କୁ ସମରେ ଜିଣିଲା
ଦୁର୍ଯ୍ୟୋଧନ ନୃପତିର ଦୁର୍ଗତି ଫେଡ଼ିଲା ।
ମେରୁଶୃଙ୍ଗ ଗଙ୍ଗାକୂଳୁଁ କୃଷ୍ଣାଙ୍କୁ ହରିଲା
ଭୀମସେନ ପ୍ରତିଜ୍ଞାରେ ସେହୁ ନାଶଗଲା ।
ଦ୍ରୌପଦୀକୁ ଜୟଦ୍ରଥ ହରିନେଲା ବନୁ
ଅନେକ ଅବସ୍ଥା ତାକୁ ଦେଲେ ତୋର ସୂନୁ ।
ରାଗେ ଭୀମ ମୋଡୁ ଥିଲା ତାର ମୁଣ୍ଡଗୋଟି
ଦୁଃଶୀଳା ଉପ୍ରୋଧେ ତାକୁ ରଖିଲେ ଯୁଧିଷ୍ଠି ।
ପୁଣି ଭୀମ ସାତବେଣ୍ଟି କଲା ତାର କେଶ
କପାଳେ କୁଟାଇ ଦେଲା ପାଣ୍ଡବଙ୍କ ଦାସ ।
ଅନେକ ମହିମା ତୋର ପୁତ୍ରଙ୍କର କଥା
ତାହା କହିବାକୁ କିଏ ହେବ ସାମରଥା ।
ମାଗୋବିରାଟେ ତୋ ପୁତ୍ରେ ଗୋପ୍ୟହେଲେ ଯାଇ
ବ୍ୟାଘ୍ର ମାଲକୁ ମାଇଲେ ନ ଜାଣିଲେ କେହି ।
ଶତସିଂହ ବଳ ଅଟେ ବିରାଟର ଶଳା
ଦ୍ରୌପଦୀ ପାଇଁକି ଭୀମ ମାରେ ଚିପି ଗଳା ।
ବୀରବାହୁ ତ୍ରିଗର୍ତ୍ତର ଦର୍ପକୁ ଧ୍ୱଂସିଲେ
ବିରାଟକୁ ଚିରସ୍ଥାୟୀ ସିଂହାସନ ଦେଲେ ।
ଗୋ ହରଣେ ମତ୍ସ୍ୟଦେଶେ ଗଲେ କଉରବେ
ଅଷ୍ଟାଦଶ କ୍ଷୌଣୀ ବଳ ଘେନିଣ ସମ୍ଭର୍ବେ ।
ଉତ୍ତରକୁ ସଙ୍ଗେ ଘେନି ସୁଭଦ୍ରାର ନାହା
ଏକା ହୋଇ କୌରବଙ୍କୁ ସେହୁ କଲା ଯାହା ।
ସମୁଦ୍ର ଫେଣ ପରାୟେ ସର୍ବେ ଗଲେ ଲୋଟି
ପରକାର୍ଯ୍ୟ ବୋଲି ଶିର ନ ପକାଏ କାଟି ।
ଯୁଧିଷ୍ଠି ଦେବ ତୋହର ପ୍ରତ୍ୟକ୍ଷେ ଧର୍ମାତ୍ମା
ଯମ କାଳଦଣ୍ଡ ଭାଙ୍ଗେ କାଳେବର ଭୀମା ।
କୋଟିଏ ସିଂହର ବଳ ଯେଉଁ ବଳରାମେ
ସୁଭଦ୍ରା ହରଣେ ପାର୍ଥ ଜିଣିଲା ସଂଗ୍ରାମେ ।
ଅର୍ଜ୍ଜୁନ ମହିମା ମୋତେ ଅଗୋଚର ହାଦେ
ତାହାକୁ ହାରିଲି ଶତଧନୁର ବିବାଦେ ।
ଇନ୍ଦ୍ର ଦେବତାଙ୍କୁ ଜିଣି ଖାଣ୍ଡବ ଦହିଲା
ଅଗ୍ନି ଲୁଦୁବୁଦୁ ବ୍ୟାଧି ମନ୍ଦାଗ୍ନି ନାଶିଲା ।
କିରାତରୂପେ ଶିବଙ୍କୁ ଜିଣିଲା ଅର୍ଜ୍ଜୁନ
ଅକ୍ଷ ତୂଣ ପାଶୁପତ ଦେଲେ ତ୍ରିଲୋଚନ ।
ସୁଗନ୍ଧିକା ହରଣରେ ହନୁ ବିବାଦରେ
ସାଗର ବାନ୍ଧିଲା ସେହୁ ଶର ସଂଯୋଗରେ ।
ଧନୁହୁଳେ ବସାଇଲା ସପତ ବ୍ରହ୍ମାଣ୍ଡ
ଅବହେଳେ ବହିଲା ସେ ମହୀ ନବଖଣ୍ଡ ।

ପଞ୍ଚାଳ ଦେଶର କଥା ଦେଖିଛ ପ୍ରତ୍ୟକ୍ଷେ
ଏକା ଅର୍ଜ୍ଜୁନ ଜିଣିଲା ରାଜାଗଣ ଲକ୍ଷେ ।
ମାଗୋ ନିରଞ୍ଜନ ବୋଧି ବୈକୁଣ୍ଠକୁ ଗଲା
ଅନାଦିନାଥ ତାହାକୁ ମନଭେଦୀ ଦେଲା ।
ପାଣ୍ଡବାସୁରକୁ ମାରି ଦୁର୍ଯ୍ୟୋଧନ ତାରି
ପାଣ୍ଡବ ନାମ ବହିଲେ ଦ୍ୱିତୀୟରେ କରି ।
ବିରାଟ ରାଜ୍ୟେ ଅଜ୍ଞାତ ବାସକୁ ସେ ସାରି
ଏବେ ବାରୁଣାବନ୍ତରେ ଛନ୍ତି ବିଜେ କରି ।
ଅନେକ ନୃପତି ଆସି ଖଟିଛନ୍ତି ପାଶ
ମୋତେ ହକାରିଣ ସେହୁ କରିଲେ ଆଦେଶ ।
ସ୍ୱାମୀଙ୍କ ଆଦେଶେ ମୁହିଁ ଅଇଲଇଁ ବେଗି
ଯାଉଛି ଦୁର୍ଯ୍ୟୋଧନକୁ ପାଞ୍ଚଗ୍ରାମ ମାଗି ।
ମାଗୋ ଅନନ୍ତ ବ୍ରହ୍ମାଣ୍ଡ ମୋର ହୃଦଗତ
ଦେଖ ତୋହର ପୁତ୍ରଙ୍କ ହୋଇଛି ମୁଁ ଭୃତ୍ୟ ।
ଦେଖ ଏବେ ମୋ ମହିମା ଉପଯୋଗ ଅନ୍ତେ
ଶେଷେ ସମସ୍ତ ସମ୍ପଦ ଦେବଇଁ ମୁଁ ତୋତେ ।
ତୁ ମହାସାଧବୀ ମାଗୋ ଅନାଦି ଅପର୍ଣ୍ଣା
ଏ ନବଦ୍ୱୀପରେ ହେବୁ ଶିରୋମଣି ସିନା ।
ସଂସାର ଜନଙ୍କ ହିତେ ହେଲ ମହାଦୁଃଖୀ
ଏବେ କିଛିକାଳ ଅନ୍ତେ ହେବ ମହାସୁଖୀ ।
ମଧ୍ୟସ୍ଥପଣେ ପେଷିଲେ ମୋତେ ଧର୍ମରାୟେ
ମାଗିବି ମୁଁ ପଞ୍ଚଗ୍ରାମ ହୋଇଣ ବିନୟେ ।
ପଞ୍ଚଗ୍ରାମ ଯୁକତରେ ଦିଏ ମୋତେ ଯେବେ
ହୋଇବ ସନ୍ଧି ସମର ନ ହୋଇବ ତେବେ ।
ପଞ୍ଚଗ୍ରାମ ନ ଦିଅଇ ଯେବେ କୁରୁପତି
ମୋର ଅଭିମାନେ ତାର ତୁଟିବ ବିଭୂତି ।
ବିଦୁର ବୋଲେ ଯୁଧିଷ୍ଠି ବଡ଼ ମନ୍ଦ କଲା
ତୋତେ କିପାଁ ମଧ୍ୟପାତ୍ର ପଣରେ ପେଷିଲା ।
ସେହି ସଭାରେ ବସନ୍ତି ଯେତେ ସର୍ବେ ମନ୍ଦ
କର୍କଶ ମଧୁପିଙ୍ଗଳ ସେ ମାନଗୋବିନ୍ଦ ।
ଶକୁନି କୂଟେ ତାଳକୁ କରାଇବ ନାଶ
ଦୁର୍ଯ୍ୟୋଧନ ବନ୍ଦିକରି ନାଶିଛି ତା ବଂଶ ।
ସ୍ୱାମୀ ହେ ଦୋଚାରୀ ଭାର୍ଯ୍ୟା ରିପୁଯୁକ୍ତ ମନ୍ତ୍ରୀ
ଅଶ୍ରଦ୍ଧାଯୁକ୍ତ ମଇତ୍ର ଖଳଲୋକେ ପ୍ରୀତି ।
ଅହନ୍ତା ବିକଳ୍ପ ବୋହୂ ଅଭାବିତ ପୁତ୍ର
ଏତେ ଲୋକଙ୍କୁ ବିଶ୍ୱାସ କଲେ କୁଳ ହତ ।
ଶକୁନି ବଂଶ ନାଶିବ ତାର ମନ୍ତ୍ରୀପଣେ
ମଧ୍ୟପାତ୍ର ନାରାୟଣ ହେଲୁ ଅକାରଣେ ।
ତସ୍କର ସଭାରେ ଯେହ୍ନେ ପୌରାଣିକ ହରି
ଦୈତ୍ୟ ସଭାରେ ବିଷ୍ଣୁଙ୍କୁ କଳନା କି କରି ।
ଅନ୍ଧ ଚିହ୍ନି ପାରିବ କି କିଏ ରତ୍ନମଣି
ବଧିର ଶୁଣିବ କାହିଁ କମ୍ବୁଘୋଷ ବାଣୀ ।
ଚାଣ୍ଡାଳ ସଭାରେ ଯେହ୍ନେ ହରିବଂଶ ପୋଥି
ପିଶାଚ ସଭାରେ କିବା ବ୍ରାହ୍ମଣେ କରନ୍ତି ।
ଯଦି ଗମନ କରିବ ତୁମ୍ଭେ ଦେବରାଜ
ନିଶ୍ଚେଁ ସେଠାରେ କହୁଛି ପାଇବଟି ଲାଜ ।
ବିଦୁର ବହୁତ ରୂପେ କହେ ଭଗ୍ନକରି
କଣ୍ଠାଗ୍ରତକାଳେ ପ୍ରାଣୀ ମନ୍ଦବୁଦ୍ଧି ଧରି ।
ମଧ୍ୟପାତ୍ରପଣ ଦେଖି ବିଚାରୁଛି ଚିତ୍ତେ
ଯାଉଛ ତାର ସମ୍ପଦ ହରିବା ନିମନ୍ତେ ।
କୃଷ୍ଣ ବୋଇଲେ ଏମନ୍ତ ନ କହ ବିଦୁର
ଯୁଧିଷ୍ଠିର ମହାପ୍ରଭୁ ମୋହର ଠାକୁର ।
ସେହି ଧର୍ମରାଜାଙ୍କ ମୁଁ ଅଟେ ବଶବର୍ତ୍ତୀ
ଦେଉ ବା ନ ଦେଉ ମୋର ଯିବାର ଯୁକତି ।
ଯୁଧିଷ୍ଠି ତାଙ୍କ ସୋଦର ମୁହିଁ ମଧ୍ୟପାତ୍ର
ମୋତେ ନିରାଶ କଲେ ତୋ ବାକ୍ୟହେବ ସତ
ଯୁଧିଷ୍ଠିର ଦୟା ଅବା କରିବେଟି ହୃଦେ
ଭୀମାର୍ଜ୍ଜୁନ ପକାଇବେ କେମନ୍ତେ ପ୍ରମାଦେ ।
ଦ୍ରୌପଦୀର ଯେ ପ୍ରତିଜ୍ଞା କହିତ ନ ପାରି
ତାଙ୍କ ବଚନ ଅନ୍ୟଥା କେ ପାରିବ କରି ।
ପୁଣି କୋଇନ୍ତାବୋଇଲେ ଯେତେକଷ୍ଟଦେଲେ
କ୍ଷତ୍ରିକୁଳେ ଜନ୍ମିକିଏ ସହିବ କି ବେଳେ ।
ମୋହର ପୁତ୍ରଚାଣ୍ଡାଳ ଶୃଗାଳ ସମାନ
ଧିକ ଧିକ ହେଉକିନା ତାଙ୍କର ଜୀବନ ।
ଆମ୍ଭର ସଖା ସୋଦର ଅଟୁ ତୁ ଯୁକତେ
କର ତୁ ଉପାୟ ଯୁଦ୍ଧ ହୋଇବ ଯେମନ୍ତେ ।
ତୁହି ଗୋବିନ୍ଦ ସମର ଯଦି ନ କରାଉ
ମୋର ରୁଧିର ମିଶାଇ ତୁ ମିଷ୍ଟାନ୍ନ ଖାଉ ।
ତୁ ଯେତେ ପ୍ରବୋଧି କରି ଆସୁ ବନମାଳୀ
ତୋର ଆଗଞ୍ଚେ ପଶିବି ନିଶ୍ଚେଁ ଅଗ୍ନିଜାଳି ।
କୋଇନ୍ତାଙ୍କର ବଚନ ଶୁଭ ଅନୁକୂଳେ
ବିଜେକଲେ ନାରାୟଣ ମଧ୍ୟାହ୍ନର ବେଳେ ।
ସଙ୍ଗେ ଅଛନ୍ତି ବିଦୁର ସବୁ ଋଷିମାନେ
ପ୍ରବେଶିଲେ ଜନାର୍ଦ୍ଦନ ହସ୍ତିନା ଭୁବନେ ।
ଧୃତରାଷ୍ଟ୍ରର ଭବନେ ହୋଇଲେ ପ୍ରବେଶ
ସମସ୍ତେ ଦେଖିଣ ତାଙ୍କୁ ହୋଇଲେ ହରଷ ।
ସଞ୍ଜୟ ବୋଇଲା ରାଜା ଶୁଣ ଧୃତରାଷ୍ଟ୍ର
ନାରାୟଣ ବିଜେ କଲେ ତୋହର ନିକଟ ।
ଅମ୍ବିକା ନନ୍ଦନ ଶୁଣି ବହୁତ ବିନୟେ
ଆସ୍ଥାନକୁ ଛାଡ଼ି ଉଭା କୁଞ୍ଚଗଲ ରାୟେ ।

ବୋଇଲା ତୋ ପଦ୍ମପାଦ ଦିଅ ବନମାଳୀ
ଲଲାଟେ ଘେନିବି ତୋର ପାଦତଳ ଧୂଳି ।
ଶ୍ରୀକୃଷ୍ଣଙ୍କର ଚରଣ ଧୃତରାଷ୍ଟ୍ର ଶିରେ
ସଞ୍ଜୟ ଇଡ଼ିଲେ ଜଳ ଚରଣ ଉପରେ ।
କୋଟି କୋଟି ତୀର୍ଥ ଯାର ଚରଣରେ ସ୍ଥିତି
ତାହା ଅଭିଷେକ କଲା ଧୃତରାଷ୍ଟ୍ର ଯତି ।
ଅନ୍ଧ ବୋଇଲା ଭୋ ସ୍ୱାମୀ ମୋର ବଡ଼ପୁଣ୍ୟ
କି ଦେଇ ତୃପ୍ତି କରିବି ତୋତେ ଜନାର୍ଦ୍ଦନ ।
ଅମୂଲ୍ୟ ରତନ ଦେଇ କରନ୍ତି ବା ପୂଜା
ବରୁଣ ଦୁହିତା ଲକ୍ଷ୍ମୀ ତୋହର ଭାରିଯା ।
ଗୀତ ଗାୟନ କରି ବା ତୋଷନ୍ତି ତୋ ମତି
ବୀଣାପାଣି ଶାରଦାର ଗୀତ ଶୁଣି ନିତି ।
ନୃତ୍ୟ ଆରମ୍ଭ କରାଇ ତୋଷନ୍ତି ତୋ ମନ
କୋଟି କୋଟି ଅପସରୀ ତୋହର ଅଧୀନ ।
ତପ କରିବାକୁ ମୋର ନାହିଁ ଯେ ଶକତି
ଶତ ସହସ୍ର ସେବାରେ ନ ଲଭୁ ତୃପତି ।
ବିଦୁର ବୋଇଲା ସ୍ୱାମୀ ବୋଲୁ ହୁଡ଼ିକରି
ସମସ୍ତଙ୍କୁ ପାଳୁଛନ୍ତି ଦୁଷ୍ଟଙ୍କୁ ନିବାରି ।
ଭକତ ବତ୍ସଳ ଦୟାମୟ ନାମଗୋଟି
ଦର୍ଶନେ ଅନ୍ଧପଟଳ ନେତ୍ରୁ ଯାଏ ଫିଟି ।
ଶୁଣି ଧୃତରାଷ୍ଟ୍ର କହେ ଏ ପ୍ରକୃତ କଥା
ସେ ମହିମା ଜାଣିବାକୁ ମୁଁ କି ସାମରଥା ।
ଶୁଣ ଆହେ ମହାତମା ବୋଇଲେ ବିଦୁର
ବୈତରଣୀ କୂଳେ ଅଟେ କରବୀର ପୁର ।
ଲକ୍ଷେ ଅଶୀସସ୍ର ଦ୍ୱିଜ ବସତି ସେ ଗ୍ରାମେ
ରୁଦ୍ରଶ୍ରବଣ ବୋଲିଣ ଏକଦ୍ୱିଜ ନାମେ ।
ଜନ୍ମରୁ ଅନ୍ଧ ଦରିଦ୍ର ପୁଣି ସେ ଅଟଇ
ଶାସନ ଐଶାନ୍ୟେ ଗୃହକରି ରହିଥାଇ ।
ଏକଭାର୍ଯ୍ୟା ଏକପୁତ୍ର ଅଟଇ ତାହାର
ସେ ଅନ୍ଧ ସମ୍ବଳ ଭିକ୍ଷା କେବଳ୍ପ ମାତର ।
ବାଳୁତ କାଳରୁ ତାର ନିରଞ୍ଜନ ଦୀକ୍ଷା
ଏକଗ୍ରାମ ଛଡ଼ା କାହିଁ ନ ମାଗଇ ଭିକ୍ଷା ।
ସମୟେକ ନାରାୟଣ ବିହିଲେ କଷଣ
ଅଦଭୂତେ ଉତପାତ ହେଲା ସେ ଗ୍ରାମେଣ ।
ସେହି ନଗ୍ରକୁ ବ୍ରାହ୍ମଣ ଭିକ୍ଷାମାଗି ଗଲା
ସେ ନଗର ଜନଶୂନ୍ୟ ହୋଇଛି ଦେଖିଲା ।
କୁଢ଼ କୁଢ଼ ପଡ଼ିଅଛି ପାଣିଦ୍ରବ୍ୟ ସାର
ଘର ଦାଣ୍ଡ ପିଣ୍ଡାଦିରେ ପଡ଼ିଛି ଅପାର ।
ପାଟପଟନୀ ଖଣ୍ଡୁଆ ନାନାଜାତି ଶାଢ଼ୀ
ବାତ ବିଘାତରେ ସବୁ ଯାଇଛନ୍ତି ଉଡ଼ି ।

ସୁବାସିତ ତଣ୍ଡୁଳ ଶ୍ରୀଜଗନ୍ନାଥ ଯୋଗ୍ୟ
ଦେଖିଣ ବ୍ରାହ୍ମଣୀ ତାହା ସବୁ କଲା ତ୍ୟାଗ ।
ନଗର ବୁଲିଣ ସେହୁ ସମସ୍ତ ଦେଖିଲା
ନରନାରୀ ନ ଦେଖି ସେ ବାହୁଡ଼ି ଅଇଲା ।
ନିଶ୍ୱାସ ପକାଇ ତହୁଁ ବାହୁଡ଼େ ବ୍ରାହ୍ମଣୀ
ଦରିଦ୍ର ହୋଇଣ ସତ୍ୟ ନ ଛାଡ଼ିଲା ପୁଣି ।
ବାଳୁତପୁତ୍ର କାଖରେ ଭିକ୍ଷାପାତ୍ର ହାତେ
ନିଶ୍ୱାସ ଛାଡ଼ି ବୋଇଲା ବ୍ରାହ୍ମଣ ଅଗ୍ରତେ ।
ବ୍ରାହ୍ମଣ ବୋଇଲା କିପାଁ ବିକଳ ତୋ ମନ
ବହୁତ ଉଛୁର ପୁଣି ହେଲା ଆଜଦିନ ।
ବ୍ରାହ୍ମଣୀ ବୋଇଲା ପଣ୍ଡା ହେଲା ଏ କି କୃତ୍ୟ
ଜନ୍ମରୁ ଦରିଦ୍ର ଆମ୍ଭେ ଭିକ୍ଷା ଆମ୍ଭ ବ୍ରତ ।
ତହିଁକି କଷଣ ଆଣି ବିଧାତା ବିହିଲେ
ଦେଖିଲେ ନଗରଯାକ ସର୍ବେ ପଳାଇଲେ ।
ପଣ୍ଡା ହେ ଜୀବନେ ଆଉ ପ୍ରୟୋଜନ କିସ
ଅଥବା ଅନଳ ଜାଳି ତହିଁ ଦେବା ଝାସ ।
ବ୍ରାହ୍ମଣ ବୋଇଲା ଦୁଃଖ ପାଇଲୁ ଗୋ ତୁହି
ସ୍ତ୍ରୀ ହୋଇ ସ୍ୱାମୀ ପୋଷିବା ଜାଣ ନ ଯୋଗାଇ
ବୋଇଲା ଦ୍ୱାରକାପୁର ବାଟ ଜାଣୁ ସହି
ବିଷ୍ଣୁଙ୍କ ଭୁବନ ତହିଁ ଦରିଦ୍ରତା ନାହିଁ ।
ବ୍ରାହ୍ମଣ ବୋଲେ ପଚାରି ଲଙ୍କା ଯାଇପାରି
ଆମ୍ଭେ ଚାଲୁ ଚାଲୁ ପଛେ ହେଉ ମାସ ଚାରି ।
ଅନ୍ଧର ଲଉଡ଼ି ଗୋଟି ଘେନିଣ ବ୍ରାହ୍ମଣୀ
ପୁଅକୁ କାଖରେ ଘେନି କଢ଼ାଇଣ ଆଣି ।
ଗ୍ରାମ ଗ୍ରାମ କେ ରହନ୍ତି ଭିକ୍ଷା ସେ କରିଣ
ପଚାରନ୍ତି ଦ୍ୱାରକାକୁ ବାଟ କେହୁ ଜାଣ ।
ପାଞ୍ଚବର୍ଷ ଷଡ଼ମାସ ବାଇଶ ଦିବସେ
ଦ୍ୱାରକାପୁରେ ପ୍ରବେଶ ହୋଇଲେ ହରଷେ ।
ତହିଁ ଦେଖିଲେ ସୁବର୍ଣ୍ଣମୟ ଅଟେ କାନ୍ତି
ପଶ୍ଚିମଦ୍ୱାରେ ରହିଲେ ନିଶ୍ଚିନ୍ତରେ ଅତି ।
ଯେବଣ ଦ୍ୱାରରେ ଭିକ୍ଷା ମାଗଇ ବ୍ରାହ୍ମଣୀ
ସୁବର୍ଣ୍ଣ ପାତ୍ରେ ପୂରାଇ ଦ୍ୟନ୍ତି ରତ୍ନମଣି ।
ଏ ବିଧିରେ ଅନ୍ଧ ତହିଁ ବରଷେ ରହିଲା
ବହୁଧନ ରତ୍ନ ପାଇ ନିଶ୍ଚିନ୍ତ ହୋଇଲା ।
ଫାଲଗୁନ ମାସ ଶୁକ୍ଳପକ୍ଷ ଏକାଦଶୀ
ଗୁରୁବାର ପୁନର୍ବସୁ ରକ୍ଷ ଯୁଗ୍ମରାଶି ।
ତୈତିଳ ନାମେ କରଣ ଆୟୁଷ୍ମାନ ଯୋଗ
କୁମ୍ଭ ସଂକ୍ରାନ୍ତିକି ସପ୍ତବିଂଶ ଅଟେ ଭୋଗ ।
ସେହି ଦ୍ୱାରକାପୁରର ବାଳପୁତ୍ରମାନେ
ଧୂଳି ଖେଳନ୍ତି ସମୁଦ୍ର ଉତ୍ତର ଉଦ୍ୟାନେ ।

ସେ ଅନ୍ଧପୁଅ ଖେଳଇ ତାହାଙ୍କ ସଙ୍ଗରେ
ପ୍ରଦ୍ୟୁମ୍ନ ଭାଙ୍ଗିଲେ ଧୂଳିଘର କୌତୁକରେ ।
ତହୁଁ ଧୂଳିଘେନି ଅନ୍ଧପୁଅ ଅତିରାଗେ
ଧୂଳି ପକାଇ ମାଇଲା ପ୍ରଦ୍ୟୁମ୍ନକୁ ବେଗେ ।
ପୁଣିହିଁ ବୋଇଲା ଆରେ ପାମର ଗଉଡ଼
କିପାଇଁ ତୁ ଭାଙ୍ଗିଦେଲୁ ମୋର ଧୂଳିଖେଳ ।
ଅନେକ ଯତନେ ମୁହିଁ ତାହା ଥିଲି ତୋଳି
ପୁଣି ପ୍ରଦ୍ୟୁମ୍ନକୁ ମାରେ ଆଞ୍ଜୁଳିଏ ଧୂଳି ।
ପ୍ରଦ୍ୟୁମ୍ନ ବୋଇଲା ଆରେ ଅନ୍ଧପୁଅ ବାଇ
ଧୂଳିଘର ଭାଙ୍ଗିଗଲେ ପୁଣି ତୋଳି ହୋଇ ।
ଏହିପରି ଉଚ୍ଚବାଚ ହେଉ ବେନିପୁତ୍ରେ
ଚାପୋଡ଼େକ ପ୍ରହାରିଲା ପ୍ରଦ୍ୟୁମ୍ନର ଗାତ୍ରେ ।
ଅତି କୋମଳ ଅଟଇ ପ୍ରଦ୍ୟୁମ୍ନର କାୟ
ଅଙ୍ଗୁଳି ଚିହ୍ନ ବସିଲା ଯଷ୍ଟି ମାଡ଼ ପ୍ରାୟ ।
କାନ୍ଦିଣ ପ୍ରଦ୍ୟୁମ୍ନ ତହୁଁ ଚଳେ ନିଜପୁରେ
ଅଶ୍ରୁପୂର୍ଣ୍ଣ ନେତ୍ରେ କହେ ପିତାଙ୍କ ଛାମୁରେ ।
ଉଚ୍ଚସ୍ୱରରେ କାନ୍ଦିଣ କରିଣ ଗୁହାରି
ବୋଇଲେ ଅନ୍ଧର ପୁତ୍ର ଗଲା ମୋତେ ମାରି ।
ବତ୍ରିଶ ସହସ୍ର ମୂଳେ ଅଷ୍ଟ ପାଟରାଣୀ
ଏତେ ଭାରିଯାଙ୍କର ସେ ଅଟେ ସ୍ନେହମଣି ।
ବ୍ୟାକୁଳ ହୋଇ ପ୍ରଦ୍ୟୁମ୍ନ କାନ୍ଦେ ପିତାଆଗେ
ବେଗେ ଉଠିଲେ ଶ୍ରୀହରି ପ୍ରଦ୍ୟୁମ୍ନ ବିରାଗେ ।
ଯେଉଁଠାରେ ସ୍ନେହ ତହିଁ ଲାଗିଥାଏ ମୋହ
ବୋଇଲେ ସେ ଅନ୍ଧପୁତ୍ର ଯହିଁ ମୋତେ ନିଅ ।
ଅନାଥ ପ୍ରାୟେକ କାନ୍ଦେ ମୋର ପୁତ୍ର ଗୋଟି
ଚକ୍ରେ ତା ଶିର କମଳ ପକାଇବି କାଟି ।
ବାପା ବାପା ବୋଲି ଉଚ୍ଚସ୍ୱରେ କାନ୍ଦିକରି
ଆସେ ପ୍ରଦ୍ୟୁମ୍ନ କୁମର କୃଷ୍ଣାଙ୍ଗୁଷ୍ଠି ଧରି ।
ଅନ୍ଧପୁଅ ପଳାଇଲା ବ୍ରାହ୍ମଣ ଅଗ୍ରତେ
ବୋଇଲା ଭୋ ପିତା ରଖ ବିପଦରୁ ମୋତେ
ଆସରେ ଅନ୍ଧଲଉଡ଼ି କି କଲୁ କାହାକୁ
ବାଳକ ବୋଲେ ନ ଜାଣି ମାରେ ପ୍ରଦ୍ୟୁମ୍ନକୁ ।
ଅନ୍ଧ ବୋଲେ କୃଷ୍ଣଙ୍କର ସେ ପୁତ୍ର ଅଟଇ
ନିଶ୍ଚେ ନାଶଗଲୁ ବାବୁ ତୋର ରକ୍ଷା ନାହିଁ ।
ଅନ୍ଧ ପୁତ୍ର ବୋଲେ ପିତା ପଳାଇବି କାହିଁ
ଅନ୍ଧ ବୋଲେ ତୋତେ ରଖି ନ ପାରିବେ କେହି
ଚଉଦ ବ୍ରହ୍ମାଣ୍ଡ ଅଟେ ଯାର ଗର୍ଭଗତ
କାହିଁ ପଳାଇ ପଶିବୁ ଆରେ ନଷ୍ଟ ସୁତ ।
ଦୁରରୁ ଦେଖିଲା ଅନ୍ଧପୁଅ କୃଷ୍ଣରୂପ
ଭୟକରି ଥରହର ହୋଇଲା ଅମାପ ।

ଅନ୍ଧପୁଅ ବୋଲେ କୃଷ୍ଣ ମହା କୋପମତି
ଅନ୍ଧ ବୋଲେ ଲୁଚିଥାଅ ମୋର ପଛକତି ।
ଅନାଦି ଅନନ୍ତ ଯେହୁ ଜଗତର ପତି
ଅନେକ ପ୍ରକାରେ କୋପ କରାଇବି ଶାନ୍ତି ।
କୋପ ଶାନ୍ତ ନ କରିବେ ଯେବେ ବାସୁଦେବ
ଚକ୍ରେ ଛେଦୁ ଦୁହେଁ ଯିବା ବଇକୁଣ୍ଠ ଠାବ ।
ବଚନେ ଅନ୍ଧ ସାଷ୍ଟାମ କରିଲା ପୁଅକୁ
ପ୍ରଦ୍ୟୁମ୍ନ ବୋଇଲା ଏହୁ ମାଇଲା ଆମ୍ଭଙ୍କୁ ।
ବାମଭୁଜେ ପ୍ରଦ୍ୟୁମ୍ନକୁ ଦକ୍ଷେ ଚକ୍ରଧରି
ରାଗେ ଅନ୍ଧକୁ ସମସ୍ୟା ଦେଲେ ଦେବହରି ।
ଗୋବିନ୍ଦ ବୋଇଲେ ଅନ୍ଧ ଆସିଲୁ ତୁ କାହୁଁ
ତୋ ପୁତ୍ର ମାଇଲା ମୋର ପୁତ୍ର କହୁ କହୁ ।
ଅନ୍ଧ ବୋଇଲା ସ୍ୱାମୀ ମୁଁ ଅଟେ ନିରିମାଖି
ଜନ୍ମଅନ୍ଧ ଦରିଦ୍ର ମୁଁ ଅଟେ ବଡ଼ ଦୁଃଖୀ ।
ମୁଁ ତୁମ୍ଭ ଦାସର ଦାସ ଭୃତ୍ୟଙ୍କର ଭୃତ୍ୟ
ମୋ ପୁତ୍ର କି ତୁମ୍ଭ ପୁତ୍ରେ ମାରି ସାମରଥ ।
ରାଗେ ପ୍ରତିବାକ୍ୟ ତାକୁ କହନ୍ତି ଗୋବିନ୍ଦ
ତୋ ପୁତ୍ର ଚାପୋଡ଼ ଚିହ୍ନ ଦେଖ ଆରେ ଅନ୍ଧ ।
ଦେଖ ଦେଖ ଦେଖ ବୋଲି ରାଗେ କଲେ ପାଟି
ତାର ଜନ୍ମାନ୍ଧ ପଟଳ ବେଗେ ଗଲା ଫିଟି ।
ପ୍ରତ୍ୟକ୍ଷେ ଅନ୍ଧର ଯହୁଁ ପ୍ରକାଶିଲା ଚକ୍ଷୁ
ଅନ୍ଧ ବୋଲେ ଜଗନ୍ନାଥ ସତେ ଆସିଅଛୁ ।
ଶଙ୍ଖଚକ୍ର ଗଦା ପଦ୍ମ ଦେଖେ ଚତୁର୍ଭୁଜେ
ଜଳଧର ପରାୟେକ ସ୍ୱରୂପ ବିରାଜେ ।
ପ୍ରଣିପାତ ହେଲା ଅନ୍ଧ ଅତି ପ୍ରେମଭୋଳେ
ବୋଲେ ଶତଜନ୍ମ ପରେ ଦେଖିଲି ମୁଁ ତୋଳେ
ସେ ଅନ୍ଧ ବ୍ରାହ୍ମଣ ପ୍ରତି ସୁପ୍ରସନ୍ନ ହୋଇ
ବିପୁଳ ସମ୍ପତ୍ତି ତାକୁ ପୁଣି ଦେଲେ ନେଇ ।
ବାରସ୍ୱତୀପୁର ଘେନି ରହିଲା ବ୍ରାହ୍ମଣ
କାଳେ ବଇକୁଣ୍ଠ ଦେଲେ ଏହି ନାରାୟଣ ।
ଶୁଣ ମହାମତି ବାସୁଦେବ କଥାଗୋଟି
ଶତଜନ୍ମ ଅନ୍ଧର ଯେ ନେତ୍ର ଗଲା ଫିଟି ।
ଯୁଧିଷ୍ଠିର ବୋଲି ତୋର ଯେଉଁ ପୁତ୍ର ଗୋଟି
ଏହି ଜଗନ୍ନାଥ ତାର ପାଦତଳେ ଲୋଟି ।
ତୁ କାହାର ପିଅର ହୋ ଅନ୍ଧ ବେନି ଚକ୍ଷୁ
ହୃଦପଦ୍ମେ ସେବା କରି କି ପୁଣ୍ୟ କରିଛୁ ।
ନିଷ୍କଳଙ୍କ ଚିତ୍ତେ ସେବା ଯେବେ ତୁ କରନ୍ତୁ
ଧର୍ମ ଅର୍ଥ କାମ ମୋକ୍ଷ ସକଳ ପାଆନ୍ତୁ ।
ଜଗନ୍ନାଥ ସ୍ମରି ତର ସଂସାରର କଷ୍ଟୁ
ଶ୍ରୀ ଜଗନ୍ନାଥ ସୁମର ଅନ୍ଧନେତ୍ର ଫିଟୁ ।

ଜଗନ୍ନାଥ ସ୍ମର ନରେ ଫିଟୁ ଏ ଦୁର୍ଗତି
ଜଗନ୍ନାଥ ସ୍ମର ନରେ ନୋହୁ ଯମ ଶାସ୍ତି ।
ଜଗନ୍ନାଥ ସ୍ମର ନରେ ବିକଶିବ ବୁଦ୍ଧି
ଜଗନ୍ନାଥ ସ୍ମର ନରେ ପ୍ରାପ୍ତହେବ ସିଦ୍ଧି ।
ଜଗନ୍ନାଥ ସ୍ମର ନରେ ନୋହୁ କାଳଘାତ
ଜଗନ୍ନାଥ ସ୍ମର ନରେ ପୁତ୍ର ହେଉ ଜାତ ।
ଜଗନ୍ନାଥ ସ୍ମର ନରେ ତୁଟୁ ନାନାରୋଗ
ଜଗନ୍ନାଥ ସ୍ମର ନରେ ପ୍ରାପ୍ତ ହେଉ ଭୋଗ ।
ଲୋଭ ମୋହ ହିଂସା ଆଦି ତ୍ୟାଗକର ସବୁ
ଜଗନ୍ନାଥ ନାମଗୋଟି ହୃଦେ ଧର ବାବୁ ।
ଜମ୍ବୁଦୀପ ଦକ୍ଷିଣରେ ଅଟେ ମହୋଦଧି
ଯମନିକ ତୀର୍ଥ ନୀଳକଳ୍ପବଟ ଭେଦି ।
ଜୟ ତୁ ପ୍ରସନ୍ନ ନାଥ ଉଦେ ନୀଳଗିରି
ଯାର ଜ୍ୟୋତ୍ସ୍ନା ଲାଗିଅଛି ବ୍ରହ୍ମାଣ୍ଡ ଆବୋରି ।
ଚାରିଲକ୍ଷ ବତ୍ରିଶ ଯେ ସସ୍ର ଅଟେ କଳି
ତହିଁ ମାଡ଼ି ବସିଅଛି ଦେବ ବନମାଳୀ ।
ଶ୍ୱେତଗଙ୍ଗା ସହିତରେ ରୋହିଣୀର କୁଣ୍ଡ
ଯମେଶ୍ୱର ଲିଙ୍ଗ ପୁଣି ବିଜେ ମାରକଣ୍ଡ ।
ଗୁପ୍ତଗଙ୍ଗା ଯମୁନା ଯେ ବହେ ସରସ୍ୱତୀ
କୋଟି ତୀର୍ଥରେ ପୁଷ୍କର ଅଟେ ବଶବର୍ତ୍ତୀ ।
ବିଜୟ ଶ୍ରୀ ରାମକୃଷ୍ଣ ସଉଭଦ୍ରା ବ୍ରହ୍ମା
ଦୋଷ ଉପେକ୍ଷିଣ ଗୁଣ ଘେନିବା ମହାତ୍ମା ।
ସକଳ ଜନ୍ତୁରେ ଶ୍ରେଷ୍ଠ ନରରୂପେ ଜନ୍ମ
ଆପଣା ଆପଣା ରୂପ ବିକାଶିଛି ଚିହ୍ନ ।
ଜଗନ୍ନାଥ ପ୍ରଭୁଙ୍କର ଭୃତ୍ୟର ମୁଁ ଭୃତ୍ୟ
ଶୂଦ୍ର ଶାରଳାଦାସର ଶତ ପ୍ରଣିପାତ ।



## ଶ୍ରୀକୃଷ୍ଣଙ୍କର ପ୍ରଥମଥର କୁରୁସଭାକୁ ଗମନ ଓ ଅପମାନ ଏବଂ ନଳରାଜାର ଉପାଖ୍ୟାନ

ଅଗସ୍ତିଙ୍କୁ ପଚାରିଲେ ବିଲଙ୍କା ରାଜନ
କୃଷ୍ଣ ବିଜେ କରିଥିଲେ ହସ୍ତିନା ଭୁବନ ।
ତହିଁ ଧୃତରାଷ୍ଟ୍ର କଲା ମାନ୍ୟ ଅତିଶୟ
କୌରବ ସଭାରେ କିସ କଲା କୁରୁରାୟ ।
ସେହି କଥା ଶୁଣିବାକୁ ବାସନା ମୋହର
କହନ୍ତି ଅଗସ୍ତି ମୁନି ଶୁଣ ନୃପବର ।
ଯା ଶୁଣନ୍ତେ ଧର୍ମ ଅର୍ଥେ ପ୍ରାପ୍ତ ହୁଏ ସ୍ୱର୍ଗ
ସଂସାରହିତେ କଲଇଁ ପର୍ବ ଉଦଯୋଗ ।
ଦୁଗ୍ଧ ଶର୍କରା ମିଳାଇ ପିବନ୍ତେ ଯେ ସ୍ୱାଦ
ତହିଁରୁ ବଳି ମଧୁର ଉଦଯୋଗ ପର୍ବ ।
ଯାହା ଯାହା କହିଲା ସେ ବିଦୁର ମହାତ୍ମା
ଧୃତରାଷ୍ଟ୍ର ବୋଲେ ସାଧୁ ତୋହର ମହିମା ।
ବାବୁ ଜଗନ୍ନାଥଙ୍କୁ ମୁଁ କରଇ ଭକତି
ପୁତ୍ର ଉପୁଜାଇ ମୁହିଁ ହୋଇଲି ଅଗତି ।
ସୁରସିଦ୍ଧ ମୁନି ଚିନ୍ତା କରନ୍ତି ଯାହାକୁ
ଇହ ପରଲୋକେ ସେହି ଦ୍ୟନ୍ତି ମୁକତିକୁ ।
ସନ୍ନିଧେ ବାସୁଦେବଙ୍କ ଚରଣେ ପ୍ରଣମି
ବୋଇଲା ସେ ସର୍ବ ଜାଣ ତୁମ୍ଭେ ଦେବସ୍ୱାମୀ
କୋଟି ବ୍ରହ୍ମାଣ୍ଡେ ଯାହାର ଅଟେ ଏକ ଧ୍ୟାନ
କିଏ ବଳେ କରିପାରେ ତାଙ୍କ କଥା ଆନ ।
ପୁଣି ବୋଇଲା ସବୁଙ୍କ ସୋଦର ତୁ ହରି
କି କାରଣେ ନାରାୟଣ ବିଜେ ମୋର ପୁରୀ ।
ଧୃତରାଷ୍ଟ୍ରର ବଚନ ଶୁଣିଣ ଶ୍ରୀହରି
ବୋଇଲେ ଶୁଣ ଯହିଁକି ବିଜୟ ମୋହରି ।
ଯୁଧିଷ୍ଠିରାଦି ଅଟନ୍ତି ତୋର ପାଞ୍ଚପୁତ୍ର
ଅରଣ୍ୟରେ ବୁଲି କଷ୍ଟ ପାଇଲେ ବହୁତ ।
କନ୍ଦମୂଳ ଭକ୍ଷି ସେହୁ ମାଗିଲେ ଯେ ଭିକ୍ଷା
କ୍ଷତ୍ରିକୁଳେ ଜନ୍ମି ଭିକ୍ଷା କରିଲେ ସେ ଦୀକ୍ଷା ।
ଯାବତୀୟ ତୀର୍ଥ ଦେଖି ଦେଶାନ୍ତରେ ବୁଲି
ପୁଛିଲେ ବୋଲନ୍ତି ଧୃତରାଷ୍ଟ୍ର ପୁତ୍ର ବୋଲି ।
ତୋର ବିଚାର କେମନ୍ତ ହେଲା କୁରୁରାଜ
ମୋହର ବିଚାରେ ତୋତେ ନୁହଇ କି ଲାଜ ।
ଅବଶେଷେ ଅଭିଷେକ ହୋଇଲେ ବିରାଟେ
ଏବେ ବାରୁଣାରେ ଆସି ରହିଲେ ନିକଟେ ।
ଅତି ଗୌରବ ଅଟଇ ଯେଣୁ ଜନ୍ମଭୂମି
ରାଜତ୍ୱ ପାଇ ସେ ଭୂମି ତ୍ୟାଗ କଲେ ସ୍ୱାମୀ ।
ବାସୁଦେବ ବାକ୍ୟ ଶୁଣି ଅନ୍ଧ ହୋଇ ଶାନ୍ତି
ବୋଇଲା ହରି ତୋ ବାକ୍ୟେ ଫିଟିଲା ମୋ ଭ୍ରାନ୍ତି
ଦଧିବାମନ ସୁମରି ଚଳ ତୁ ଅଚ୍ୟୁତ
ମୋ ପୁତ୍ରକୁ ସମାର୍ଜ୍ଜିଣ ଆସ ହେ ତୁରିତ ।
ଶ୍ରୀହରି ବୋଇଲେ ପୁତ୍ରେ ଡାକ ତୋର କତି
ପଡ଼ା ପାଞ୍ଚଖଣ୍ଡି ଏବେ ଦେଉ କୁରୁପତି ।
ଧୃତରାଷ୍ଟ୍ର ବୋଲେ ତୁମ୍ଭେ ଶୁଣ ଦେବ ହରି
ମୁହିଁ ତାହାଙ୍କୁ ନ ପାରେ ସନ୍ନିଧେ ହକାରି ।
ଯୁଧିଷ୍ଠିର ଚିତ୍ତ ଯେବେ ହେଲା ବିହ୍ୱଳିତ
ଆଉ କୁରୁପାଣ୍ଡବଙ୍କ କି ସନ୍ଧି ଅଚ୍ୟୁତ ।
ପୁଣି ପୁଣି ଧୃତରାଷ୍ଟ୍ର ଏହିକଥା ଭଣି
ବୋଲେ ଆଉ ପ୍ରୀତି ଲୋଡ଼ୁ କିସ ଚକ୍ରପାଣି ।
ଗୋବିନ୍ଦ ବୋଇଲେ ସେହି ନ ଆସନ୍ତୁ ପାଶ
ସେହି ପାଞ୍ଚଜଣ ଦୂରେ କରିଥାନ୍ତୁ ବାସ ।

ଅରଣ୍ୟରେ ଥାଇ ତୋତେ କରନ୍ତି ସେ ଚିନ୍ତା
କତୁହି ଯେଣୁ ତାହାଙ୍କର ଈଶ୍ୱର ଦେବତା ।
ଭାଗ୍ୟବନ୍ତ ନ ଭୁଞ୍ଜନ୍ତି ଇଷ୍ଟକୁ ନ ଦେଲେ
ପାଣ୍ଡବ ଯେ ନବର୍ତ୍ତନ୍ତି ତୋତେ ନ ଦେଖିଲେ ।
ତୋର ଉଚିତ ଅଟଇ ତାଙ୍କୁ ପୋଷିବାକୁ
ପଡ଼ା ପାଞ୍ଚଖଣ୍ଡି ଏବେ ଦିଅ ତୁ ତାହାଙ୍କୁ ।
ଲକ୍ଷେ ଯୋଜନରେ ଅଧିକାରୀ ଅଟୁ ତୁହି
କିଞ୍ଚିତରେ ଦିଅ ଥାନ୍ତୁ କୋଣକରେ ରହି ।
ଧୃତରାଷ୍ଟ୍ର ବୋଲେ ହରି ଏ ଅଟେ ଯୁକତେ
ତୋ ବିଚାର କି ଯୁଧିଷ୍ଠି କହିଅଛି ତୋତେ ।
ଯେମନ୍ତ ବିଚାର ତୁହି କଲୁ ଦେବରାୟେ
ତା କି ସଂକଳ୍ପ କରିଛି ପଣ୍ଡୁର ତନୟେ ।
ସନ୍ନିଧେ ରହିଲେ କେବେ ନୋହିବ ପୀରତି
ପଡ଼ା ପାଞ୍ଚଖଣ୍ଡ ମାଗି ଆସ ହୋ ଶ୍ରୀପତି ।
ପୁନରପି ବୋଲେ ସଭାସ୍ଥଳେ ବିଜେ କର
ଶାନ୍ତି କରାଇ କହିବୁ ଦୁର୍ଯ୍ୟୋଧନେ ଗିର ।
ସ୍ୱାମୀ ତୋ ମଧ୍ୟସ୍ଥପଣେ ମୁହିଁ ନିସ୍ତରିଲି
ସାନନ୍ଦ ଭଜିଣ ହରି ଗତି ମୁଁ ପାଇଲି ।
ଗାନ୍ଧାରୀ ବୋଇଲା ବାବୁ ଶୁଣ ବାସୁଦେବ
କୌତୁକ ବିନୟ ଭାବେ କଥା ପ୍ରକାଶିବ ।
ଉଭୟ କୁଳକୁ ହରି କରି ଆସ ରକ୍ଷା
ଯେବେ ତୋର ସୋମବଂଶ ରଖିବାକୁ ବାଞ୍ଛା
ସମରାଜ୍ୟ ଘୋଟିଅଛି ମାନଚକ୍ରବର୍ତ୍ତୀ
ବଡ଼ ଗ୍ରାମ ମାଗିଲେ ସେ ଲଭିବ ଅପ୍ରୀତି ।
ତୁହି ତ ଜଗମୋହନ ଦଶଠାରୁ ଭଣ୍ଡି
ଜଣ ଜଣ କରି ମାଗ ପଡ଼ା ପାଞ୍ଚଖଣ୍ଡି ।
କୃଷ୍ଣ ବୋଇଲେ ତୁ ଦୁଇକୁଳ ଅନ୍ନପୂର୍ଣ୍ଣା
ତୋର ବଚନ ପାଷାଣ ଗାର ମୋତେ ସିନା ।
ଯୁଧିଷ୍ଠିର ଭୀମସେନ ତୃପ୍ତ ହୋଇଥିଲେ
ଆଉ ଭାଇମାନେ ଶାନ୍ତି ଲଭିବେ କି ଭଲେ ।
ଗାନ୍ଧାରୀ ବୋଇଲେ ତୁହି ଶୁଣ ଦେବରାଜ
ମୂର୍ଖକୁ ବୁଝାଇ କର ସୁବିଧାନ କାର୍ଯ୍ୟ ।
ଗାନ୍ଧାରୀ ଅନ୍ଧ ସଞ୍ଜୟ ଆବର ବିଦୁର
ପ୍ରଣିପାତ ହେଲେ ସର୍ବେ କୃଷ୍ଣଙ୍କ ପୟର ।
ବିପଦ ପଡ଼ିଛି ଏବେ ଆସି ଦୁଇକୁଳେ
ତୁହି ହରି ସମାଧାନ କର ଏତେବେଳେ ।
ସମସ୍ତଙ୍କୁ ସମାର୍ଜ୍ଜନା କରି ଦେବରାୟ
ହସ୍ତିନା ସଭାକୁ ତହୁଁ କରିଲେ ବିଜୟ ।
ଆସ୍ଥାନରେ ବସିଅଛି ଦେବ କୁରୁପତି
ଭୀଷ୍ମ ଦ୍ରୋଣ କୃପ ବ୍ରହ୍ମା ବାହ୍ଲୀକ ଅଛନ୍ତି ।
ସୋମଦତ୍ତ ବୀରକର୍ଣ୍ଣ ପୁଣି ଅଶ୍ୱତ୍ଥାମା
ଜୟଦ୍ରଥ ଅଳମ୍ବୁଷ ବିକର୍ଣ୍ଣ ମହାତ୍ମା ।
ରାଜା ସନ୍ନିଧ ଆସ୍ଥାନେ ବିଜୟ ଶକୁନି
ରାଜ୍ୟ ବୁଝେ ଭୂତ ଭବିଷ୍ୟତ ପୋଥି ଘେନି ।
ଶତପଦ୍ମ ଯୋଦ୍ଧା କରିଛନ୍ତି ପଟୁଆରୀ
ରାଜାଙ୍କୁ ଆବୋରିଛନ୍ତି ନାନାଅସ୍ତ୍ର ଧରି ।
ସିନ୍ଧୁ ଦେଶର ଅଟଇ ଯେଉଁ ବଡ଼ ବାଜୀ
ତହିଁରେ ଚଢ଼ି ରାଉତେ ଦିଶୁଥାନ୍ତି ତେଜି ।
ଲକ୍ଷେ ପାଟଛତ୍ର ତହିଁ ଶୋଭଇ ଆକାଶେ
ଲକ୍ଷେ ଚାମର ପଡ଼ଇ ରାଜା ଚଉପାଶେ ।
ସୁବର୍ଣ୍ଣର ବନ୍ଧାଶଙ୍ଖ ଲକ୍ଷଯୋଦ୍ଧା ସ୍ଫୁରି
ଅଷ୍ଟାଦଶ କ୍ଷୌଣୀ ବଳ ରହିଛନ୍ତି ଘେରି ।
ଦୁନ୍ଦୁଭି ଟମକ ବାଜେ ଉଡ଼ଇ ନିଶାଣ
ସେ ସଭା ମହିମା ଅଟେ ଏହିପରି ଜାଣ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଦୁର୍ବିନ୍ଦ ଦୁରନ୍ତ
ଦୁରାକର୍ଣ୍ଣ ଦୁର୍ମନ୍ଦ ଯେ ଦୁର୍ବାର ଦୁର୍ବନ୍ତ ।
ଦୁର୍ଜ୍ଜୟ ଦୁଃଶଙ୍ଖ ଦୃମ ଦୃଶିର ଦୃବାଳ
ଦୁର୍ଜ୍ଜାତଳ ଦୁର୍ବାସନ ଦୁର୍ଜ୍ଜୟ ଦୁର୍କାଳ ।
ଦୁରଙ୍ଗ ଦୁଃସଙ୍ଗ ଦୁରନ୍ତକ ଦୁରାକର୍ଣ୍ଣ
ଦୁସ୍ୱାନୁ ଦୁର୍ମନୁ ଦୁରଆନ ଦୁରାତନ ।
ଦୁର୍ଜ୍ଜକ ଦୁର୍ବନ୍ଧ ଦୁନ ଯେ ଦୁଃଶନ ବୋଲି
ଦୁର୍ଭାନୁ ଦୁର୍ହାଧ ଦୁରପକ୍ଷାଦି କହିଲି ।
ଏ ବିଧିରେ ଦୁର୍ଯ୍ୟୋଧନ ଭ୍ରାତା ଅଟେ ଶଏ
ଦୁର୍ବାସା ମନ୍ତ୍ରେ ଦୁର୍ନାମ ଅଟନ୍ତି ସଭିଏଁ ।
କରରେ ଗଦା ଶକତି ମୁଦ୍‌ଗର କାତି
କର୍ଣ୍ଣକଟାରୀ ଲାଙ୍କିଆ ସର୍ବେ ଝଲକନ୍ତି ।
କୁଠାର ତୋମର ପୁଣି ଅସି ତୀକ୍ଷ୍ଣ ମୁନା
ଭଲ୍ଲ ଗୁରୁଜ କୃପାଣ ଅଙ୍ଗେ ବଜ୍ର ସେହ୍ନା ।
ଗଜ ବାଜୀ ଆସ୍ଥାନର ତଳକୁ ଆବୋରି
କରନ୍ତି ସେ ନିଶୋଧନ କରେ ଅସ୍ତ୍ର ଧରି ।
ରହିଛନ୍ତି ଆସ୍ଥାନରେ ସମସ୍ତ କୌରବ
ବିଦୁର ସଞ୍ଜୟ ମଧ୍ୟେ ବିଜେ ବାସୁଦେବ ।
ଶିରରେ ଲମ୍ବିତ କୂଡ଼ା ତ୍ରିକଚ୍ଛ ବସନ
ହସ୍ତେ କୁଶବଟୁ ବକ୍ଷେ ଶ୍ରୀବତ୍ସର ଚିହ୍ନ ।
କାନ୍ଧରେ ପଇତା ଆଉ ସୁସଞ୍ଚ ଉତ୍ତରୀ
କଣ୍ଠେ ତୁଳସୀର ମାଳ କରମାଳା ଧରି ।
ନୀଳବର୍ଣ୍ଣ ମେଘ ଯେହ୍ନେ ଝଲକେ ଚପଳା
ଦରହସିତ ବଦନ ଗଳେ ବନମାଳା ।
ଶୁଦ୍ଧ ସ୍ଫଟିକ ପରାୟ ଦିଶଇ ବଦନ
ମହୀରେ ଚାଲନ୍ତେ ଦିଶେ ଅତି ସୁଶୋଭନ ।

ବିଶ୍ୱାମିତ୍ର ବାମଦେବ ବଶିଷ୍ଠ ମାର୍କଣ୍ଡ
ଗଉତମ ଭରଦ୍ୱାଜ ବ୍ୟାସ ଯେ ବିଭାଣ୍ଡ ।
ୟାଙ୍କମେଳେ ବାଳଖିଲ୍ୟା ଋଷି ଲକ୍ଷ ଲକ୍ଷ
କୋଶକ ଅନ୍ତରେ ଯାଇ ଦିଶିଲେ ଶ୍ରୀବତ୍ସ ।
ବାରଣ ଉପରେ ରହି ଦେଖେ ଦୁଃଶାସନ
ସଭାକୁ ଆସୁଅଛନ୍ତି ନନ୍ଦର ନନ୍ଦନ ।
ଆସ୍ଥାନ ଉପରେ ଥାଇ ଦେଖେ ଧାର୍ତ୍ତରାଷ୍ଟ୍ରି
ଅନାନ୍ତି ସର୍ବ ଯୋଦ୍ଧାଏ କରି ଏକଦୃଷ୍ଟି ।
ହେ ଚୈତନ୍ୟ ଏ ଦ୍ୱାପର ଯୁଗ ବଡ଼ ଧନ୍ୟ
ଜଗନ୍ନାଥ ହେଲେ ନରଦେହେ ଅବତୀର୍ଣ୍ଣ ।
ଶତ୍ରୁ ପଣେ ହେଉ ଅବା ମିତ୍ରପଣେ ହେଉ
ଯେ ଦେହ ତେଜଇ ଧନ୍ୟ ତାଙ୍କୁ ଚାହୁଁ ଚାହୁଁ
ଭୀଷ୍ମ ବୋଇଲେ ଆଜର ଦିନ ଧନ୍ୟ ଧନ୍ୟ
ପ୍ରତ୍ୟକ୍ଷେ ଦେଖିଲୁ ଜଗନ୍ନାଥଙ୍କ ବଦନ ।
ସାଧୁ ସାଧୁ ପାଣ୍ଡବରେ ତୁମ୍ଭ ପ୍ରାଣ ଧନ୍ୟ
ସାଧୁ ଏହି ସୋମବଂଶ କଉରବ ସୈନ୍ୟ ।
ବହୁ ଲୟକରି ହୃଦେ ଚିନ୍ତନ୍ତି ଯାହାଙ୍କୁ
ଶତ୍ରୁ ପଣରେ ଦେଖିଲୁ ସେହି ଗୋବିନ୍ଦଙ୍କୁ ।
ଦେଖ ଆମ୍ଭମାନଙ୍କର ପୂର୍ବ ପୁଣ୍ୟପଣ
ଚକ୍ରେ କି ଶିର ଛେଦିବେ ପ୍ରଭୁ ନାରାୟଣ ।
ଦେଖ ଏ ସଭାରେ କେଡ଼େ ସାର୍ଥକତା ଆଜ
ସଭାରେ ପଡ଼ିବ ଜଗନ୍ନାଥ ପଦରଜ ।
ଶକୁନି ବୋଇଲା ଦେବ ଶୁଣ କୁରୁନାଥ
ମୁଁ ମଣୁଛି ହେବ ପରା ପାଣ୍ଡବଙ୍କ ଦୂତ ।
ଦ୍ରୋଣ ବୋଇଲେ ଏ କଥା କେ କହି ପାରିବ
ଅନାଦି ପୁରୁଷ ଦୂତ କାହାର ହୋଇବ ।
ଶ୍ରୀବାସୁଦେବ ଦର୍ଶନେ ଦୁର୍ଗତିରୁ ତରି
ମୂଢ଼େ ତରିଯାନ୍ତି ତାଙ୍କ ନାମ ମନେ ସ୍ମରି ।
ଅନ୍ୟ କେହି ନାହାନ୍ତି କି କୃଷ୍ଣ ହେବେ ଦୂତ
ଏହିକ୍ଷଣି ବୁଝାଯିବ ତହିଁର ବୃତ୍ତାନ୍ତ ।
ଦୁର୍ଯ୍ୟୋଧନ ବୋଇଲାକ ଆସୁ ନାରାୟଣ
ବସୁ ଏ ସଭାରେ ହରି ମୋକ୍ଷର କାରଣ ।
ଶକୁନି ବୋଇଲା ନନ୍ଦ ଗଉଡ଼ର ସୁତ
ଗୋପାଳୁଣୀ ଯୁବତୀଙ୍କୁ ହରିଛି ସେହି ତ ।
ଦୂରନ୍ତ ପାତକ ସେହି ଅର୍ଜ୍ଜେ ବାଳକାଳେ
ପୂତନା ସ୍ତିରୀ ମାଇଲା କ୍ଷୀରପାନବେଳେ ।
ଷଣ୍ଢାସୁର ମାଇଲା ସେ ଗୋପପୁରେ ପଶି
ଗୋହତ୍ୟା ସ୍ତ୍ରୀହତ୍ୟା ଆଦି କନ୍ଧେ ଅଛି ବସି ।
ଭୀଷ୍ମ ବୋଇଲେ ଯାହା ତୁ କହିଲୁ ଏ ବାଣୀ
ମୋ ଶରୀର କମ୍ପୁଅଛି ତୋର କଥା ଶୁଣି ।

ନାନାପାତକ କରନ୍ତି ଆନ ଜନମାନେ
କ୍ଷୟ ହୁଏ ନାରାୟଣ ସାକ୍ଷାତ ଦର୍ଶନେ ।
ଶକୁନି ବୋଇଲା ତୁମ୍ଭେ ଶୁଣ ଗୁରୁଦ୍ରୋଣ
ସେହତ୍ୟାର ଦୋଷାଦୋଷ ସାବଧାନେ ଶୁଣ
ବିଷ୍ଣୁ ପ୍ରଭୁ ବୋଲିକରି ଏକ ସତ୍ୟଯୁଗେ
ସୋମକ ନାମେ ଈଶ୍ୱର ଥିଲେ ମଧ୍ୟଯୁଗେ ।
ମିଥୁନ ଶୁକଳ ପକ୍ଷ ଦଶମୀର ତିଥି
ସୌରୀବାର ସେହିଦିନ ନକ୍ଷତ୍ର ଯେ ସ୍ୱାତୀ ।
କରରେ କୁଠାର ଘେନି ସେ ଧୌମ୍ୟ ଧୂର୍ଜ୍ଜଟି
ଚନ୍ଦ୍ରଭାଗାରୁ ଆଣିଲେ କୁଶବିଡ଼େ କାଟି ।
ନଦୀକୂଳେ ଶୁଖାଇଲେ କୁଶବିଡ଼ା ଚିରି
ଲୋଭେ ଗୋମାତା ଖାଆନ୍ତେ ତାକୁ ଆସିକରି
ସେ ସୋମରୁଦ୍ର ଧାଇଁଲେ ଅତିଶୟ ରାଗେ
ଗୋମାତାଙ୍କୁ ପ୍ରହାରିଲେ ଶୂଳ ନେଇ ବେଗେ
ଗୋମାତାଙ୍କ ଶିର ଛିଡ଼େ ଈଶ୍ୱର ପ୍ରହାରେ
ସେ ମୁଣ୍ଡ ଲାଗିଲା ଯାଇ ଶିବଙ୍କ ହସ୍ତରେ ।
ବହୁତୀର୍ଥ କରି ଶିବ ନ ପାରିଲେ ଧ୍ୱଂସି
ସ୍ୱର୍ଗ ଭୁବନକୁ ହର ନ ପାରିଲେ ପଶି ।
ଅଲୋକିତ ପାପୀହେଲେ ଗୋହତ୍ୟାର ଦୋଷେ
ଈଶ୍ୱର ଅପୂଜ୍ୟ ହେଲେ ଭୁବନ ତ୍ରିଦଶେ ।
ତହୁଁ ଭୈରବ ରୂପରେ ହୋଇଲେ ପ୍ରଚଣ୍ଡ
ଅଦ୍ୟାପି ତାହାଙ୍କ ହସ୍ତେ ଅଛି ଗୋରୁମୁଣ୍ଡ ।
ଶକୁନି ମନ୍ତ୍ରୀ କହିଲା କୌରବ ସଭାରେ
ଗୋହତ୍ୟା ନୋହିଲା ପାର ଶିବେ ସାକ୍ଷାତରେ
ତାଙ୍କଠାରୁ ଶ୍ରେଷ୍ଠ ଏ କି ଗଉଡ଼ କହ୍ନାଇ
ଗୋହତ୍ୟା ପାତକ ଯିବ ଅଙ୍ଗେ ଲୀନ ହୋଇ
ନାନାଦି ପାତକମାନ ଅଛି ଯାର ଅଙ୍ଗେ
ଏ ସଭାରେ ବସିବେ ସେ ଆସି କେଉଁବାଗେ
ଗୋପାଳ ପୁଅଙ୍କ ସଙ୍ଗେ ଖାଇ କାଦମ୍ବରୀ
ବସ୍ତାସୁରକୁ ମାଇଲା ନାନା ଛନ୍ଦକରି ।
ଜନ୍ମରୁ ଅଜାତି ପୁଣି ଅଟେ ଦୋଷକାରୀ
ବନଜ ଗୋଷ୍ଠୀ ହୋଇଲେ ନାରକୀର ସରି ।
କୁଳକ୍ଷୟ ମନ୍ତ୍ରୀ ଯହୁଁ କହେ କଟୁବାଣୀ
ଦୁଷ୍ଟ ଯୋଦ୍ଧାଏ ଆସ୍ଥାନ ନିରୋଧିଲେ ଶୁଣି ।
ବାଟ ଆବୋରି ରହିଲା ଯାଇ ଦୁଃଶାସନ
ଅନେକ ଯୋଦ୍ଧା ବେଢ଼ନ୍ତେ ହୋଇଲା ଗହନ
ଆସ୍ଥାନକୁ ତେତେବେଳେ ବିଜେ କଲେ ହରି
ହୋଇଅଛି ବେଳ ତିନି ଘଡ଼ି ଆସିକରି ।
ବିଜେକଲେ ବାସୁଦେବ ଆସ୍ଥାନର ତଳେ
କାହାକୁ ନ ଶୁଭେ ଡାକ ସଭାର ଗହଳେ ।

ତେର ପାବଛ ଅଟଇ ସଭା ବାଟ ଗୋଟି
ପଞ୍ଚପାବଛ ପର୍ଯ୍ୟନ୍ତେ କୃଷ୍ଣ ଗଲେ ଉଠି ।
ଦ୍ରୋଣ ବୋଇଲେ ଦେଖ ହୋ ମାନଚକ୍ରବର୍ତ୍ତୀ
ସଭାସ୍ଥଳେ ବିଜେକଲେ ଆସି ଶିରୀପତି ।
ଯେ ସଭାରେ ନାରାୟଣ ଦେବଙ୍କୁ ନ ବରି
ଜାଣ ସେ ସଭା ପିଶାଚ ସଙ୍ଗତରେ ସରି ।
ଶକୁନି ବୋଇଲା ତୁମ୍ଭେ ଶୁଣ ଗୁରୁ ଦ୍ରୋଣ
କୁଣ୍ଡୀ ନଗ୍ରରେ ଭୀଷ୍ମକ ନାମେ ନୃପରାଣ ।
ସେ ରାଜା ଦୁହିତା ନାମ ଅଟଇ ରୁକ୍ମିଣୀ
ସ୍ୱୟମ୍ବର କଲେ ରାଜା ଲକ୍ଷେ ନୃପଆଣି ।
ଜରାସନ୍ଧର ସଙ୍ଗରେ ବହୁ ଦେଶ ରାୟେ
ଛୟାଶୋଇ ସସ୍ର ରାଜା ବସନ୍ତି ସଭାରେ ।
ସ୍ୱୟମ୍ବର ହୋଇଥିଲା ପୂର୍ଣ୍ଣ ତିନି ଦିନ
ବୈଶାଖ ଶୁକଳପକ୍ଷ ଦ୍ୱିତୀୟାର ଦିନ ।
ଦୁଷ୍ଟ ପ୍ରଜାଏ ଅଛନ୍ତି ଆସ୍ଥାନରେ ବସି
ରାମକୃଷ୍ଣ ବିଜେହେଲେ ସେ ସ୍ଥାନରେ ଆସି ।
ବାସ୍ତରି ପାବଛ ଉଚ୍ଚ ଅଟେ ସଭାସ୍ଥଳୀ
ବାଉନ ପାବଛେ ବିଜେ ରାମ ବନମାଳୀ ।
କରେ ଧରିଣ ସୌନନ୍ଦ ମୂଷଳ ଲଙ୍ଗଳ
ମହା ବିଶ୍ୱରୂପେ ବିଜେ କଲେ କାମପାଳ ।
ଶଙ୍ଖ ଚକ୍ର ଗଦା ଧନୁ ଯେ ଶାରଙ୍ଗ ହସ୍ତେ
ଗରୁଡ଼ରେ ହରି ରାମ ତାଳଧ୍ୱଜ ରଥେ ।
ଜରାସନ୍ଧ ବୋଇଲେ ଯେ କରି କୋପଦୃଷ୍ଟି
ସଭାପରେ ଗଉଡ଼ଙ୍କୁ ନ ଦିଅରେ ଉଠି ।
ନନ୍ଦଗଉଡ଼ର ସିନା ଏହି ପୁତ୍ରବେନି
ନାନା ପାତକର ଦୋଷ ଅଙ୍ଗେ ଛନ୍ତି ଘେନି ।
ଆମ୍ଭେ ରାଜାଏ ସମସ୍ତେ ଏଥେଁ ଅଛୁ ବସି
କିରୂପେ ଗଉଡ଼ ପୁଅ ବସିବେକ ଆସି ।
ଏସନକ ବିଚାରନ୍ତେ ଅସ୍ତ ହେଲା ବେଳ
ଲଜ୍ଜାପାଇ ବାହୁଡ଼ିଲେ କୃଷ୍ଣ କାମପାଳ ।
ଶକୁନି ବୋଲେ ଏ କଥା ରହିଅଛି ପୂର୍ବେ
ସେ କଥା ଅନ୍ୟଥା ଆଉ କରିବ କେ ଏବେ ।
ଦୁର୍ଯ୍ୟୋଧନ ବୋଲେ ମାମୁଁ ଏହା ଯେବେଅଛି
ଏବେ କେମନ୍ତ ସଭାରେ ବସିବେ ଶ୍ରୀବତ୍ସି ।
ଭୀଷ୍ମ ବୋଇଲେ ଏ କଥା କଲୁ ଯେବେ ପ୍ରତେ
ଆଦ୍ୟ ପ୍ରାନ୍ତ କରି ମନ୍ତ୍ରୀ କହିଲା କି ତୋତେ
ସଭାରେ ଅନୀତି କଥା ଜରା କହୁଁ କହୁଁ
ଉଠିଗଲେ ରାମକୃଷ୍ଣ କୋପଭରେ ତହୁଁ ।
ବିଜେକଲେ ତହୁଁ ଯାଇ ମହତ ପର୍ବତେ
ସନ୍ନିଧିକୁ ହକାରିଲେ ବିନତାର ସୁତେ ।
ବୋଇଲେ ତୁ ବେଗେ ଚଳ ଆରେ ଖଗେଶ୍ୱର
ବେଗେ ଯାଇ ଭୀଷ୍ମଙ୍କର ସଭା ଭଗ୍ନକର ।
ଆଜ୍ଞା ପ୍ରମାଣେ ଚଳିଲା ବିନତାର ବାଳ
ବିଶ୍ୱରୂପ ପ୍ରକାଶିଲେ ତେଜ ଅନର୍ଗଳ ।
ବେନି ପକ୍ଷ ବିସ୍ତାରିଣ କଲା ମହାବାତ
ଉଡ଼ିଗଲେ ରାଜା ଗଜ ଅଶ୍ୱର ସହିତ ।
ସହସ୍ରେ ଯୋଜନେ ସର୍ବେ ପଡ଼ିଲେକ ଯାଇଁ
ଆସ୍ଥାନ ନଗର ସବୁ ଗଲା ଚୂର୍ଣ୍ଣହୋଇ ।
ଶୁଣ ଦୁର୍ଯ୍ୟୋଧନ ଦୁହେଁ ସଭାକୁ ନ ଗଲେ
କାଳେ ଏକ ବାହନକେ ଏତେ କୃତ୍ୟକଲେ ।
ଆହେ ମାନଗୋବିନ୍ଦ ତୁ ହେତୁକରି ବୁଝ
ଦୁଷ୍ଟଙ୍କ ଗର୍ବଗଞ୍ଜନକାରୀ ଦେବରାଜ ।
ବାବୁ ଜରାସନ୍ଧ ରାଜା ହୋଇଲା ଅପ୍ରୀତି
ଯୁଗଭୋଗ ରାଜାହୋଇ ନ ପାରିଲା ବର୍ତ୍ତି ।
ଚିତ୍ରକୂଟ ମାୟାଧର ସବୁ ସେ ଜାଣଇ
ଯାର ଯେମନ୍ତ ବେଭାର ତାକୁ ଦେଇଥାଇ ।
ପୁଣିହିଁ ବୋଇଲେ ଭୀଷ୍ମ ବାବୁ ଆଜ୍ଞା ଦିଅ
ସଭାକୁ ବିଜେ କରନ୍ତୁ ପ୍ରଭୁ ଦେବରାୟ ।
ଗାଙ୍ଗେୟ ବଚନ ଶୁଣି ରାଜା ହେଲା ତୁନି
ପୁଣିହିଁ ପ୍ରତିଉତ୍ତର ଦେଲାକ ଶକୁନି ।
ତୁମ୍ଭେ ତ ବହୁତ କଥା କହିଲ ଗାଙ୍ଗେୟ
ସେ ବାସୁଦେବ କେବଣ ରାଜାର ତନୟ ।
ସେ ଅନାଦି ଗୋପାଳ ତୁ ଅପୁତିକ ଅଟୁ
ଅକାରଣରେ ଅଯୁକ୍ତି ବଚନ ପ୍ରକଟୁ ।
ହେ ଗାଙ୍ଗେୟ ତୋର ପୁତ୍ର ଦୁହିତାଦି ନାହିଁ
ପ୍ରଭାତ କାଳେ ତୋହର ବଦନ ନ ଚାହିଁ ।
ସଭା ମଧ୍ୟରେ ଯଦ୍ୟପି ବସୁ ତୁ ଆରମ୍ଭେ
କୁଳବୃଦ୍ଧ ବୋଲି ମାନ୍ୟ କରୁ ସର୍ବେ ଆମ୍ଭେ ।
କହୁଁ କହୁଁ ଅତିଶୟ କୋପିଲା ଶକୁନି
ଜାଣିଣ ଗାଙ୍ଗେୟ ତହୁଁ ହୋଇଗଲେ ତୁନି ।
ଦଶ ପାବଛ ପର୍ଯ୍ୟନ୍ତ କୃଷ୍ଣ ଗଲେ ଉଠି
ଦୁଷ୍ଟରାଜା ବସିଛନ୍ତି ତାଙ୍କୁ ଦେଇ ପିଠି ।
ତେର ପାବଛରେ ବସିଛନ୍ତି ଋଷିମାନେ
ବିଦୁର ସଞ୍ଜୟ ଛନ୍ତି କୃଷ୍ଣ ସନ୍ନିଧାନେ ।
ବିଦୁର ବୋଇଲେ ତୁମ୍ଭେ ଶୁଣ ହେ ସଞ୍ଜୟ
ମୋର ଚିତ୍ତେ ଜନମିଲା ଅତିଶୟ ଭୟ ।
ସଞ୍ଜୟ ବୋଇଲେ ଏଥୁ ଲାଜପାଇ ଗଲେ
କଉରବେ ନାଶଯିବେ କେଉଁଭାବେ ହେଲେ
କଳିହା ଶକୁନି ମନ୍ତ୍ରୀ ହୋଇଅଛି ତାର
ଅଷ୍ଟାବଧାନେ କରିବ କାର୍ଯ୍ୟ ସେ ପିତାର ।

ଦଶ ପାବଚ୍ଛର ତଳେ ନାରାୟଣ ଉଭା
ଦେଖି ସାର୍ଥକ ହୋଇଲା  କୌରବଙ୍କ ସଭା ।
କୋଟିସିଂହ ପରାକ୍ରମ ଅଟେ ଯେଉଁ କଂସ
ଯେ ତରୁଣ ରୂପ ଦେଖି ପ୍ରାଣେ ହେଲା ନାଶ ।
ସଞ୍ଜୟ ବୋଲେ କୌରବକୁଳ ଏବେ ଧନ୍ୟ
ସାଧୁ ତୁମ୍ଭ ପିତା ମାତା ପୁଣିହିଁ ଜୀବନ ।
ସ୍ୱାମୀ ଏହି ଅଭିମାନ ସହିଛୁ କିପରି
କାହିଁକି ଏହାଙ୍କ ଦୋଷ ଅଛୁ  ତ୍ୟାଗକରି ।
ଗୋବିନ୍ଦ ବୋଇଲେ ତୁମ୍ଭେ ହେ ସଞ୍ଜୟ ଶୁଣ
ପିଠିକରି ବସନ୍ତେ କି ଏହି ନୃପରାଣ ।
ଯେଣୁ ଅଟନ୍ତି ମୋହର ଠାକୁର ଯୁଧିଷ୍ଠି
ଏହୁ ସୋଦର ତାଙ୍କର ଅଟେ ଧାର୍ତ୍ତରାଷ୍ଟ୍ରି ।
ଭୀଷ୍ମ ପିତାମହ ଦ୍ରୋଣ ତାହାଙ୍କର ଗୁରୁ
ସେ ନିମନ୍ତେ ସବୁଦୋଷ ମନରୁ ସଂହାରୁ ।
କୌରବ ସଭାରେ ଏହା ବିଚାର କରନ୍ତେ
ବେଳ ସାତଘଡ଼ି ଆସି ହୋଇଲା ଯୁକତେ ।
ଝାଳରେ ତ୍ରିପସ୍ତ ହେଲେ ପ୍ରଭୁ ଦେବରାଜ
ସର୍ବ ସହୁଛନ୍ତି ଯେଣୁ ଯୁଧିଷ୍ଠିଙ୍କ କାର୍ଯ୍ୟ ।
ଦ୍ରୋଣ ବୋଇଲେ ତୁ ପୁଣ ରାଜ ରାଜେଶ୍ୱର
ଜଗମୋହନନାଥଙ୍କୁ ଝିଙ୍ଗାସ ନ କର ।
ଲୋମେ ଲୋମେ ଅବସ୍ଥିତ ଯାହାର ବ୍ରହ୍ମାଣ୍ଡ
ଉଦରେ ରହିଛି ଯାର ମହୀ ନବଖଣ୍ଡ ।
ସେହି ମହାପ୍ରଭୁ ଉଭା ଛନ୍ତି ସଭାତଳେ
କାର କି ଶିରକମଳ ନାହିଁ ସ୍କନ୍ଧସ୍ଥଳେ ।
ପନ୍ନଗନାରାୟଣ ତୁ କକ୍ଷା ଜଗଜ୍ଜେଠୀ
ମହାରାଜାଧିରାଜା ତୁ ଅଟୁ ଧାର୍ତ୍ତରାଷ୍ଟ୍ରି ।
ତୋତେ ନ ଶୋଭଇ ବାବୁ ଏହି କଥାଗୋଟି
ସୁବାକ୍ୟ କହି ଫିଟାଅ ଅନ୍ଧପୁଟୁଳଟି ।
ସନ୍ତୋଷକୁ ଭଜ ବାବୁ ମାନଚକ୍ରବର୍ତ୍ତୀ
ତ୍ରିଦଶ ଠାକୁର ପରା ଅଟନ୍ତି ଶ୍ରୀପତି ।
ସଭାକୁ ଆସନ୍ତୁ ହରି ବସନ୍ତୁ ଆସ୍ଥାନେ
କରିବାକୁ ସମାଧନା ପାଦାର୍ଘ୍ୟ ବିଧାନେ ।
ଶକୁନି ବୋଇଲା ଦ୍ରୋଣ ତୁମ୍ଭେ ତ ଭିକ୍ଷାସୀ
ଏକ ଭାରିଯା ଗୋଟିକୁ ନ ପାରିଲ ପୋଷି ।
ସପତ ମାସର ସେହୁ ଥିଲା ଗର୍ଭବତୀ
ବ୍ୟାଧି ଆବୋରନ୍ତେ ଚଳି ନ ପାରିଲା ସତୀ ।
ନଖ ଘେନି ବିଦାରିଲ ତାହାର ପେଟକୁ
ଉଛୁଡ଼ି କାଢ଼ିଲା ତାର ପେଟରୁ ପୁଅକୁ ।
ତୋହର ବୁଦ୍ଧିରେ ସେହୁ ପ୍ରାଣେ ହତହେଲା
ଅଶ୍ୱ ପ୍ରାୟ ରାବିପୁତ୍ର ଅଶ୍ୱତ୍ଥାମା ହେଲା ।
ସ୍ତିରୀହତ୍ୟା ଦୋଷ ଜାଣ ତୋ ଶରୀରେ ଅଛି
ବିଦ୍ୟାଗୁରୁ ପାଇଁ ତୋତେ ନବୋଲୁ ଯେ କିଛି
ଆପଣେ ପାତକୀ ହୋଇ ପରେ କହୁ କଥା
ଆପଣା ପରାୟ ମଣି ଦେଉଛୁ ବ୍ୟବସ୍ଥା ।
ଯେମନ୍ତ ଗୋଷ୍ଠୀରେ ଜନ୍ମ ସେହିକଥା କହୁ
ସାମାନ୍ୟ ଆସ୍ଥାନ ବୋଲି ମଣିଲୁ କି ଏହୁ ।
ପନ୍ନଗନାରାୟଣ ଏ ଶ୍ରୀମାନ ଗୋବିନ୍ଦ
ଲକ୍ଷେ ରାଜା ମୌଡ଼ମଣି ଜମ୍ବୁଦ୍ୱୀପ ଚନ୍ଦ୍ର ।
ଆହେ ଦ୍ରୋଣ କୋଟିତୀର୍ଥ ଘେନିଣ ପୁଷ୍କର
ଅଭିଷେକ କରିଅଛି ଯେଉଁ ରାଜା ଶିର ।
ଭୀଷ୍ମ ବୋଇଲେ କହିଲୁ ତୁହି ନ ବିଚାରି
ପୁଷ୍କରାଭିଷିକ୍ତ ନୁହେଁ କେଉଁ ଦଣ୍ଡଧାରୀ ।
ପୁଷ୍କରାଭିଷେକୀ ସିନା ହୋନ୍ତି ରାଜା ହାଦେ
କୋଟିତୀର୍ଥ ଘେନିଥାଏ ଜଗନ୍ନାଥ ପାଦେ ।
କୃଷ୍ଣ ପଦ୍ମପାଦୁ ଯେହୁ ଆସିଅଛି ବହି
ଦେବରାଜ ବ୍ରହ୍ମଋଷି ଗାଧୁଅନ୍ତି ତହିଁ ।
ବିଷ୍ଣୁ ନଖକୋଣୁ ବହେ ଯେଉଁ ଧବଳାଙ୍ଗୀ
ମୁକତ ହୁଅନ୍ତି ନରନାରୀ ଦେବଦେବୀ ।
ସୁବୁଦ୍ଧି ମନ୍ତ୍ରୀ ହୋଇଣ ନ ଜାଣୁ ତୁ କିଛି
ବିଷ୍ଣୁ ଅଂଶେ ନ ଜନ୍ମିଲେ ରାଜା କେ ହୋଇଛି
କୁବେର ଅଂଶ ଘେନିଣ ଜନମ ନ ହେଲେ
ସାଧବ ହୋଇବ କାହୁଁ ମହାଜ୍ଞାନୀ ହେଲେ ।
ଗନ୍ଧର୍ବ କଳା ନ ଥିଲେ ସାଧ କି ଗାୟନ
ମୁନିଅଂଶ ନ ଥିଲେ କି ଶାସ୍ତ୍ରେ ହେବ ଜ୍ଞାନ ।
କାମଦେବାଂଶ ନ ଥିଲେ କାହିଁ ରୂପବନ୍ତ
ହନୁଙ୍କ କଳା ନ ଥିଲେ ନୋହି ବଳବନ୍ତ ।
ତୁ ମନ୍ତ୍ରୀ ଜଗତଜନମାନଙ୍କର ବନ୍ଧୁ
ସୁବୁଦ୍ଧି ପଣ୍ଡିତ ହୋଇ ଜଗନ୍ନାଥ ନିନ୍ଦୁ ।
ଶକୁନି ବୋଇଲା ଜାଣ ଦେବତା ହୋଇଲେ
ସଭାରେ ଗଣିତା ନୁହେଁ ହତ୍ୟାଦୋଷ ଥିଲେ
ତୀର୍ଥ ହୋଇକରି ଯେବେ ହେବ ଦୋଷକାରୀ
ବ୍ରାହ୍ମଣ ହୋଇଣ ଯେବେ ହେବ ଅନାଚାରୀ ।
ଅନ୍ୟାୟୀ ଦ୍ୱିଜେ ନ ଜାଣି ତାକୁ କଲେ ମାନ୍ୟ
ଆପଣା ଐଶ୍ୱର୍ଯ୍ୟ ତୁଟେ ପୁତ୍ର ହୁଏ ହୀନ ।
ଏମନ୍ତ ବିଚାର ବସି କରନ୍ତେ କୌରବ
ସଭା ତେର ପାବଚ୍ଛରେ ଉଭା ବାସୁଦେବ ।
ଝର ଝର ହୋଇ ଅଙ୍ଗୁ ଝାଳ ଯାଏ ବହି
ସବୁ ସହନ୍ତି ଯୁଧିଷ୍ଠି ଦେବ କାର୍ଯ୍ୟ ପାଇଁ ।
ବିଦୁର ବୋଇଲା ତୁହି ଜଗତର ପ୍ରଭୁ
ଅତିହିଁ ଝିଙ୍ଗାସ ପଣ କେତେ ତୁ ସହିବୁ ।

ଅବଶ୍ୟ ପ୍ରାଣରେ ନାଶ ହୋଇବେ କୌରବେ
ଚକ୍ରରେ ଛେଦନ କର ଏମନ୍ତ ପ୍ରସ୍ତାବେ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ହୋ ବିଦୁର
ଯୁଧିଷ୍ଠି ଦେବଙ୍କ ଏହୁ ସମସ୍ତେ ସୋଦର ।
ମଧ୍ୟ ପାତ୍ରର ପଣରେ ଆସିଅଛି ମୁହିଁ
ଯାଙ୍କୁ କେମନ୍ତେ ନାଶିବି ସ୍ୱାମୀଙ୍କୁ ନ କହି ।
ଶୁଣିଲେ କୋପ କରିବେ ଦ୍ରୌପଦୀର ସାଇଁ
ଏମନ୍ତ ବାକ୍ୟ କହିଲେ ଦେବ ଭାବଗ୍ରାହୀ ।
ଗୋବିନ୍ଦ ମୁଖରୁ ଏହା ଶୁଣିଣ ବିଦୁର
ବୋଇଲେ ସରିଲା ପ୍ରଭୁ ଏ ଦୁର୍ଯ୍ୟୋଧନର ।
ତହୁଁ ଆସ୍ଥାନେ ଉଠିଣ ଅମ୍ବୁବତୀ ସୁତ
ଦୁର୍ଯ୍ୟୋଧନକୁ କହିଲା ହୋଇଣ ବିନୀତ ।
ବାବୁ ତୁମ୍ଭେ ଜମ୍ବୁଦ୍ୱୀପେ ପୃଥିବୀ ଧାରଣା
ଦିବ୍ୟଚକ୍ଷୁ ଥାଉଁ ଥାଉଁ ହେଉଅଛ ବଣା ।
ଶ୍ରୀ ହରି ବିଜେ କରନ୍ତୁ ଆସି ଆସ୍ଥାନରେ
ଦେବରଷି ବ୍ରହ୍ମରଷି ଅଛନ୍ତି ସଙ୍ଗରେ ।
ଚତୁର୍ଦ୍ଦଶ ଦଣ୍ଡ ଆସି ହୋଇଲାକ ବେଳା
କିମ୍ପାଁ କାରଣେ ତୁମ୍ଭେ କର ଏତେ ହେଳା ।
ଆଜ୍ଞାଦିଅ ଆସ୍ଥାନକୁ ଆସନ୍ତୁ ଶ୍ରୀହରି
ମୋ ବାକ୍ୟେ କୋପ ନ କର ଅନୁଗ୍ରହ କରି ।
ବିଦୁର ବାକ୍ୟେ ସାନନ୍ଦ ରାଜା ଚକ୍ରବର୍ତ୍ତୀ
ବୋଇଲା ଆସ୍ଥାନେ ବିଜେ କରନ୍ତୁ ଶ୍ରୀପତି ।
ବାସବର ଆଜ୍ଞା ଯେହ୍ନେ ପାଳଇ ମାତଳି
ସ୍ୱପନ ସୁଲଭ ପ୍ରାୟେ ବିଜେ ବନମାଳୀ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଛାଡ଼ିଦେଲେ ପଥ
ସଭାରେ ବିଜୟ କଲେ ଆସି ଜଗନ୍ନାଥ ।
ଆକାଶରେ ଦେଖୁଥିଲେ ଥାଇ ଦେବଗଣ
ଶୂନ୍ୟବାଣୀ ହେଲା ଶତ୍ରୁ ନାଶ ନାରାୟଣ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଶକୁନି
ବାହ୍ଲିକ ସୋମଦତ୍ତ ଯେ କରିଲେ ଦୟନି ।
ଆସ୍ଥାନରେ ବସିଥିଲା ରାଜା ଧାର୍ତ୍ତରାଷ୍ଟ୍ରି
କାହାକୁ ନ କରେ ମାନ୍ୟ ଆସ୍ଥାନରୁ ଉଠି ।
ରାଜା କର୍ଣ୍ଣରେ କହିଲା ଯାଇଣ ଶକୁନି
ରାଜ୍ୟ ମାଗି ଆସିଅଛି ପାଣ୍ଡବାଜ୍ଞା ଘେନି ।
ଦୁର୍ଯ୍ୟୋଧନ ବୋଲେ ମାମୁଁ ପ୍ରତିବାକ୍ୟ ଦିଅ
ଶକୁନି ବୋଇଲା ତୋର କହିବା ବିଧେୟ ।
ସେହୁ ଜଗତର ନାଥ ତୁହି ମହୀଧର
ଏହି ବାକ୍ୟ ହୋଇବ ନା ତାଙ୍କର ତୋହର ।
ବେନି କାଖରେ ଶ୍ରୀକୃଷ୍ଣ ବେନିହସ୍ତ ଦେଇ
ସଭାର ମଧ୍ୟରେ ଦେବ ଛନ୍ତି ଉଭା ହୋଇ ।

ବସ ବୋଲି ନ ବୋଇଲା ସେ ମାନଗୋବିନ୍ଦ
ହୃଦ ଯାର କୁନ୍ତ କାହୁଁ ହୋଇବ ସୁସାଧ ।
ଦୁର୍ଯ୍ୟୋଧନ ପ୍ରତିବାକ୍ୟେ ବୋଲେ ନାରାୟଣ
କିଅର୍ଥେ ଆମ୍ଭର ପୁରେ କରିଲ ପ୍ରୟାଣ ।
କିବା ଅନୁଗ୍ରହ ମୋତେ ଦେଖିବା ନିମନ୍ତେ
ଅବା କି କାର୍ଯ୍ୟେ ଆଗତ କହ ଏବେ ମୋତେ
ହରି ହେ ବଡ଼ ହରଷ ହୋଇଲି ମୁଁ ଆଜ
ଅସୁର ଦର୍ପ ଭୟ କି ହେଲା ଦେବରାଜ ।
ଦେବତା ବ୍ରାହ୍ମଣ କିବା ପିତୃମାତୃ କାର୍ଯ୍ୟେ
ମୋତେ ସମ୍ବାଦ ଦେବାକୁ କରିଛ କି ବିଜେ ।
ଜନମ ସୁଫଳ ହେଲା ବିଜେକଲ ଆଜ
ବଡ଼ ସୁଲଭ ଆଜ ମୋ ହେଲା ଦେବରାଜ ।
ସ୍ୱାମୀ ଏ ଦ୍ୱାପରଯୁଗ ସାର୍ଥକତା ଦେଖି
ଶ୍ରବଣେ ଯା ଶୁଣିଥିଲି ତାହା ନେତ୍ରେ ଦେଖି ।
ଆହେ ହରି ରାଗ ମୋହ ହିଂସା ଅପବାଦେ
ମାୟା ମୋହେ ପଡ଼ି ମୁହିଁ ବଣାହେଲି ହାଦେ ।
ପରମାନନ୍ଦ ପୁରୁଷ ଆସି ସଙ୍ଗେ ଖେଳା
ତୋତେ ସାମାନ୍ୟ ପରାୟେ ବୁଝି କରୁ ହେଳା
ଗୋପପୁରେ ଖେଳୁଥାଉ ଗୋପାଳଙ୍କ ମେଳେ
ଅତି କୌତୁକେ ମାତିଲୁ ତୁହି ଭାବଭୋଳେ ।
ବସ୍ତାଙ୍କୁ ନ ପାଇ ନନ୍ଦ ଲୋଡ଼ିଗଲା ବାଟେ
ଚୂଳଗୋଟି ଧରି ତୋର ପିଟିଲାକ ଛାଟେ ।
ଗୋଟାଏ ଗୋପାଳ ପୁଅ ଖେଳ କୁତୂହଳେ
ଚାପୋଡ଼େ ମାଇଲା ନେଇ ତୋର ବକ୍ଷସ୍ଥଳେ
ପଳାଇ ଯାଆନ୍ତେ ତୁହି ପଡ଼ିଲୁ ହାମୋଡ଼ି
ସେ ଡେଇଁ ଯାଆନ୍ତେ ତୋର ଶିରେ ପାଦପଡ଼ି
କୁତୂହଳ ପୁରୁଷ ତୁ ସହ୍ୟକଲୁ ତାହା
ସେହି ଦୋଷ ନ ଘେନିଲୁ ତୁହି ଚଉବାହା ।
ସ୍ୱାମୀ ରାଧିକାର ତୁଲେ ଭ୍ରମୁ କୁତୁହଳେ
ନାନାଦି କୌତୁକ କରି ମାଧବୀର ତଳେ ।
ଏମନ୍ତ ଚରିତ ତୋର ଦେଖିଣ ଗୋପାଳ
ଧାଇଁ ଯାଇଁ ଧଇଲା ସେ ଦୁହିଁଙ୍କର ବାଳ ।
ତହିଁ ପୁଣି ବିଶ୍ୱରୂପ ଧରି ଦେବହରି
ପେଲି ପକାଇଲୁ ଚନ୍ଦ୍ରସେଣା ଭୁଜ ଧରି ।
ସହସ୍ର ଯୋଜନେ ଯାଇଁ ପଡ଼େ ଚନ୍ଦ୍ରସେଣା
ଷଡ଼ମାସ ବୁଲି ବୁଲି ପଥ ହେଲା ବଣା ।
ଏମନ୍ତ ଚରିତମାନ ଶୁଣିଅଛି କର୍ଣ୍ଣେ
ପ୍ରତ୍ୟେ କରୁ ନ ଥିଲି ମୁଁ ନ ଦେଖି ନୟନେ ।
ଗୋବିନ୍ଦ କହିଲେ ତୁହି କହିଲୁ ଯେମାନ
ମିଥ୍ୟା ନୁହଇ ଏମାନ ପ୍ରକୃତ ବଚନ ।

ଦୁର୍ଯ୍ୟୋଧନ ବୋଲେ ଦୋଷ ନ ଧର ତାଙ୍କର
ମୋ ଦୋଷ ନ ଧର ମୁହିଁ ତୋର ସହୋଦର ।
ତୁ ଦେବ ମୋହର ଦୋଷ କରିବୁ ଉପେକ୍ଷା
କୋପ ଛାଡ଼ି ନାରାୟଣ ମୋତେ କର ରକ୍ଷା ।
ଗୋବିନ୍ଦ ବୋଇଲେ ଭ୍ରାନ୍ତି ନ କର ତୁ ମନେ
କୋପ କରିବି ମୁଁ ତୋତେ କେଉଁ ପ୍ରୟୋଜନେ
ଦୁର୍ଯ୍ୟୋଧନ ବୋଲେ ମୋର ସୁହୃଦ ତ ଅଛି
ମୋର ପୁରରେ ଭୋଜନ କର ଶିରୀବତ୍ସି ।
ପବିତ୍ର ବ୍ରାହ୍ମଣ ଏହୁ ଭରଦ୍ୱାଜ ନାତି
ସମସ୍ତ ରାନ୍ଧଣା ଜାଣେ ଗୌରୀ ସୌରୀ ପ୍ରତି
ଗୋବିନ୍ଦ ବୋଇଲେ ହତ୍ୟାକାରୀ ଅସ୍ତ୍ରଧାରୀ
ତାହାକୁ ବ୍ରାହ୍ମଣ ବୋଲି ଲେଖ କେଉଁପରି ।
ଭୋଜନ ଅର୍ଚ୍ଚନା ତୁହି କଲୁ କୁରୁରାଜ
ଯହିଁକି ଆସିଲି ତାର ହେଉ କେଉଁ କାର୍ଯ୍ୟ ।
ଦୁର୍ଯ୍ୟୋଧନ ବୋଲେ ହରି ଦେବଣ ସନ୍ଦେଶ
ବିସ୍ତାରିଣ ସେହି କଥା ମୋ ଆଗେ ପ୍ରକାଶ ।
କୃଷ୍ଣ ଭଣି ଶୁଣ କୁଞ୍ଜଗଳ ଅଧିକାରୀ
ଯୁଧିଷ୍ଠି ଦେବ ସୋଦର ଅଟନ୍ତି ତୋହରି ।
ତାହାଙ୍କର ପିଅର ସେ ପଣ୍ଡୁରାଜା ଥିଲେ
ଧୃତରାଷ୍ଟ୍ରେ ରାଜ୍ୟ ଦେଇ ବନବାସ ଗଲେ ।
ଶତସିଂହ ପର୍ବତରେ ଘୋର ଅରଣ୍ୟରେ
ଶୀତ ଖରା ବର୍ଷା ସେହୁ ବଞ୍ଚିଲେ କଷ୍ଟରେ ।
କନ୍ଦମୂଳ ଖାଇ ଦୁଷ୍ଟ ଦାନବଙ୍କୁ ନାଶି
ଏ ପଞ୍ଚ ରାଜ୍ୟକୁ ରକ୍ଷା କଲେ ଦିବାନିଶି ।
ଅନ୍ଧପଟଳ ବାନ୍ଧିଣ ବସିଲେ ଗାନ୍ଧାରୀ
କୋଇନ୍ତା ପାଳିଲେ ତୋତେ ଅତି ଯତ୍ନକରି ।
ଏବେ ସେ ପାଣ୍ଡବେ ତୋତେ ନିଜରାଜ୍ୟେ ସ୍ଥାପି
ବୁଲିଲେ ସେ ଘୋରବନେ କାଳକ ଅଦ୍ୟାପି ।
ଅନେକ ପାଇଲେ ଦୁଃଖ ଥାଇଣ ବନସ୍ତେ
ଅଜ୍ଞାତ ବର୍ଷ ବଞ୍ଚିଲେ ବିରାଟେ ଗୁପତେ ।
ଏବେ ଆସିଣ ଉଦିତ ହେଲେ ଇନ୍ଦ୍ରପ୍ରସ୍ଥେ
ସୋଦର ପ୍ରତିପାଳିବା ଯୋଗାଇ ନା ତୋତେ
ମୋତେ ରାଇ ଆଜ୍ଞା ଦେଲେ ଧରମ ଯୁଧିଷ୍ଠି
ଧାର୍ତ୍ତରାଷ୍ଟ୍ରେ ମାଗ ହରି ପଡ଼ା ପାଞ୍ଚଗୋଟି ।
କିଞ୍ଚିତ ମାତ୍ରକେ ପଡ଼ା ପାଞ୍ଚଖଣ୍ଡି ଦେଲେ
କୋଣକରେ ପଡ଼ିଥିବେ ଭାଇଙ୍କର ତୁଲେ ।
ଦୁର୍ଯ୍ୟୋଧନ ତୁଲେ ଥାଉ ପ୍ରୀତି ନିରବଧି
ଧୃତରାଷ୍ଟ୍ରଙ୍କ ଚରଣେ ଥିବି ମୁଁ ଆରାଧି ।
ମହୀଧର ଲକ୍ଷଣରେ ଅଟେ ତୋର ଜନ୍ମ
ସୋଦର ନ ସମ୍ଭାଳିଲେ କିସ ଧର୍ମମାନ ।
ଯୁକତେ ସେହୁ ଅଟନ୍ତି ତୋର ଉପକାରୀ
ଅନେକ ସଙ୍କଟୁ ତୋତେ ଅଛନ୍ତି ଉଦ୍ଧାରି ।
କଲା ଉପକାରମାନ ନ ଘେନେ ଯେ ଜନ
ନିଶ୍ଚେ ଜାଣିବ ସେ ହେବ ନରକେ ପତନ ।
ପଡ଼ା ପାଞ୍ଚଖଣ୍ଡ ରାଜା ଦିଅ ପାଣ୍ଡବଙ୍କୁ
ଚିରଲକ୍ଷ୍ମୀ ଘେନିଯାଅ ଲଭିଣ ସୁଖକୁ ।
ଦୁର୍ଯ୍ୟୋଧନ ବୋଲେ ହରି ଆଜି ଏଥେଁ ରହ
କାଲି ପ୍ରଭାତ ଆସ୍ଥାନବେଳେ ମୋତେ କହ ।
ଘଡ଼ି ଘଡ଼ିଆ ଜଣାଏ ଆସି ସଭାତଳ
ସୁବେଳ ପ୍ରକାଶ ହେଲା ମଣୋହିର ବେଳ ।
ସୂର୍ଯ୍ୟବେଳରେ ଭୁଞ୍ଜିଲେ ଅନ୍ନ ହୁଏ ପାକ
ଚନ୍ଦ୍ରବେଳରେ ଭୋଜନ ନୁହଇ ଯୌକ୍ତିକ ।
ଦୁର୍ଯ୍ୟୋଧନ ବୋଲେ ହରି ଘେନି ନିବେଦନ
ଆହ୍ନିକ ସାରି ଏଠାରେ କରିବା ଭୋଜନ ।
ଗୋବିନ୍ଦ ବୋଇଲେ ଯିବୁ ବିଦୁର ଗୃହକୁ
ସେଠାରେ ଆଜି ଭୋଜନ ଦେବେ ସେ ଆମ୍ଭଙ୍କୁ
ସଙ୍ଗେ ଘେନି ବିଦୁରକୁ ଯାଉଁ ବନମାଳୀ
ଦେଖି ଦୁର୍ଯ୍ୟୋଧନ ରାଜା ବୋଇଲାକ ଚଳି ।
ମାମୁଁ ମୋହର କହିଲା ଯେଉଁ କଥାମାନ
ସେ ମହାମନ୍ତ୍ରୀର କଥା ହୋଇବ କି ଆନ ।
ବାଳକାଳରୁ ବଢ଼ିଲୁ ଗୋପାଳଙ୍କ ମେଳେ
ଛାଡ଼ି ନ ଗଲା ତାଙ୍କର ପ୍ରକୃତିରୁ ତିଳେ ।
ପୁନରପି ବୋଇଲା ସେ ଶୁଣିବା ଶ୍ରୀପତି
କହୁଛି ଏବେ ବିଦୁର ଅଟେ ଯେଉଁ ଜାତି ।
ଶୂଦ୍ରସେନ ବୋଲିକରି ଏକଇ ନୃପତି
ତାହାର ଦୁହିତା ନାମ ଅଟେ ଜମ୍ବୁବତୀ ।
ପରାଶର ପୁତ୍ରକଲେ ତା ସଙ୍ଗରେ ପ୍ରୀତି
ବ୍ରାହ୍ମଣ ବୀର୍ଯ୍ୟେ ଶୂଦ୍ରାଣୀ ଗର୍ଭରୁ ଉତ୍ପତ୍ତି ।
ପ୍ରତ୍ୟକ୍ଷେ ନର ଚାଣ୍ଡାଳ ବୋଲନ୍ତି ଏହାକୁ
ପଣ୍ଡୁ ଧୃତରାଷ୍ଟ୍ର ତେଣୁ ତ୍ୟାଗକଲେ ତାକୁ ।
ଦ୍ୱିଜହୋଇ ଶୂଦ୍ରଠାରୁ କଲେ ପ୍ରତିଗ୍ରହ
ଜାଣିଥାଅ ସେହି ପ୍ରାଣୀ ନର୍କେ ହୁଏ ଦାହ ।
ବ୍ରାହ୍ମଣ ହୋଇଣ ଯେବେ ଶୂଦ୍ର ଅନ୍ନ ଭୁଞ୍ଜି
ନାଶକର ଦଣ୍ଡେ ହୁଏ ବହୁକାଳ ଗଞ୍ଜି ।
ଦ୍ୱିଜ ହୋଇ ଶୂଦ୍ରଗର୍ଭେ ଯେବେ ବୀର୍ଯ୍ୟଦିଏ
ରଉରବ ନର୍କେ ସେହୁ ଚିରଦିନ ଥାଏ ।
ବ୍ରାହ୍ମଣ ହୋଇଣ ଯେବେ ଶୂଦ୍ରେକରେ ସେବା
ନର୍କେ କୀଟ ହୁଏ ସେହୁ ମନରେ ରଖିବା ।
ବ୍ରାହ୍ମଣ ହୋଇଣ ଯେବେ ହରେ ପରନାରୀ
ଯମ ଶାସ୍ତି ଦିଏ ତପ୍ତ କଟାହରେ ଭରି ।

ବ୍ରାହ୍ମଣ ହୋଇଣ ଯେବେ ହରେ ପରବିତ୍ତ
କୋଟି ଜନମ ନରକୁଁ ନୁହଇ ମୁକତ ।
ହରି ତୁ ଜାତ ହୋଇଛୁ ପଦ୍ମ ଋଷିବଂଶେ
ଶୂଦ୍ରାନ୍ନେ ବଳାଉ ଚିତ୍ତ ତୋର ପ୍ରୀତିଆଶେ ।
ଯଥାଭାବେ ପ୍ରୀତି ତୁହି କରିଛୁ ଯୁକତେ
ଅନ୍ୟ ଜାତି ଘରେ ଅନ୍ନ ଭୁଞ୍ଜିବୁ କେମନ୍ତେ ।
ଅନେକ ଧିକ୍‌କାର କରି କହି ଧାର୍ତ୍ତରାଷ୍ଟ୍ରି
ଆସ୍ଥାନ ଉପରୁ ତହୁଁ ବେଗେ ଗଲା ଉଠି ।
ଗୋବିନ୍ଦ ବିଜୟ କଲେ ବିଦୁରର ପୁରେ
ଅନେକ ଯୋଗାଡ଼ କରେ ବିଦୁର ସମ୍ଭାରେ ।
ବହଇ ଗଙ୍ଗା ଯମୁନା ଯେଉଁ ନଦୀଗୋଟି
ବିଧିବିଧାନରେ ସ୍ନାନ କଲା ଧାର୍ତ୍ତରାଷ୍ଟ୍ରି ।
ନିତ୍ୟକର୍ମ ବିଧି ସାରି ତହିଁ ନୃପରାଜ
ମଣୋହିକି ବିଜେକଲା ନ କରିଣ ବ୍ୟାଜ ।
ସୁବାସ ଅନ୍ନ ବ୍ୟଞ୍ଜନ ଯା ଦେବତା ଭୋଗି
ଭୁଞ୍ଜି ଆଚମନ ସାରି ପାନ ହେଲା ଲାଗି ।
ଚତୁଃସମ ଲାଗି ହୋଇ ଦୁର୍ଯ୍ୟୋଧନ ରାଜା
ନିଅବକାଶେ ଯାଇଣ ବିଜେ କଲା ଶଯ୍ୟା ।
ନିଦ୍ରାତେଜିଣ ଦେବାଙ୍ଗ ବସ୍ତ୍ର ହେଲା ଲାଗି
ଦିବ୍ୟ ଅବତାର ହୋଇ ବାହାରିଲା ବେଗି ।
ଚନ୍ଦନ କସ୍ତୁରୀ ଅଙ୍ଗେ ହୋଇଲା ଲେପନ
ସୁବାସରେ ଚତୁର୍ଦ୍ଦିଗ ହୋଇଗଲା ପୂର୍ଣ୍ଣ ।
ବିଜେକଲା ଯାଇ ଚନ୍ଦ୍ରଶାଳାର ଭବନେ
ଖଟଣିଏ ପ୍ରବେଶିଲେ ଆସି ସନ୍ନିଧାନେ ।
ଖଟନ୍ତି ଅତି ହରଷେ ସେ ସର୍ବ ଗଣିକା
ତାଣ୍ଡବ ଆଳାପନ ଯେ କରନ୍ତି ନାୟିକା ।
ଏମନ୍ତ ସମୟେ ପୁଣି ପ୍ରଭୁ ଦାମୋଦର
ବିଜୟ କରିଲେ ଯାଇ ବିଦୁର ମନ୍ଦିର ।
ଆହ୍ନିକ ସାରିଲେ ନାଥ ଋଷିଗଣ ମେଳେ
ଅନେକ କୌତୁକ କଲେ ଗଙ୍ଗାନଦୀ ଜଳେ ।
ଅନେକ ଭକତିଭାବେ ଖଟଇ ବିଦୁର
ମଣୋହି କୋଠିରେ ଯାଇ ବିଜେ ଦାମୋଦର
ଶର୍କରା ଅଧାମ ଖଣ୍ଡ କ୍ଷୀର ବାସପଣା
ଅମୃତପାଣି କଦଳୀ ପଇଡ଼ ଅଗଣା ।
କେଶର ସିଙ୍ଗଡ଼ା ଲାଗି ହେଲେ ନାରାୟଣ
ସୁପକ୍ୱ ଫଳ ଋଷିଏ କରିଲେ ଭକ୍ଷଣ ।
ନଟିକାଳ ନାନାଫଳ ଖଣ୍ଡ ଯେ ଏଣ୍ଡୁରି
ଖଣ୍ଡର ଚକୁଳି ପୁଣି ଦୁଗ୍ଧ ସରପୁଳୀ ।
ବିଦୁର ଭକ୍ତି ବିନୟେ କଲା ଯେତେବେଳେ
ସ୍ୱର୍ଗ ଦେବତା ଇଚ୍ଛିଲେ ହରି ତେତେବେଳେ ।

ଅମ୍ଭୁବତୀର ନନ୍ଦନ ଜାଣେ ସର୍ବବୁଦ୍ଧି
ଋଷିଙ୍କି ଭୋଜନ ଦେଲା ଯେଉଁରୂପେ ବିଧି ।
ପ୍ରସନ୍ନ ହୋଇଣ ବର ଦେଲେ ସର୍ବଋଷି
ବଇକୁଣ୍ଠେ ହୁଅ ତୁହି ବିଷ୍ଣୁ ଲୋକବାସୀ ।
ଭୁଞ୍ଜନ୍ତି ଜଗତନାଥ ହରଷ ବଦନେ
ପରଷଇ ବିଦୁର ଯେ ଭୋଳ ହୋଇ ମନେ ।
ପ୍ରସନ୍ନେ ଅଭୟ ବର ଦେଲେ ନନ୍ଦଶିଷି
ବୋଇଲେ ବିଦୁର ହୁଅ ବିଷ୍ଣୁ ପୁରବାସୀ ।
ଜଗତବନ୍ଧୁ ନିସ୍ତାର କରିବା ନିମନ୍ତେ
ଭୋଜନବେଳେ କୌତୁକ କଲେ ଜଗନ୍ନାଥେ
ମହାପ୍ରଭୁ କରତଳ ଅଛନ୍ତି ବଢ଼ାଇ
ପରଷି ଆଶେ ବିଦୁର ହସ୍ତେ କିଛି ନାହିଁ ।
ପ୍ରେମେ ଭୋଳ ହୋଇଅଛି ବିଦୁରର ମନ
କଦଳୀର ଚୋପା ଦେଲା ଗୋବନ୍ଦ ହସ୍ତେଣ ।
ଅନ୍ତର୍ଯ୍ୟାମୀ ନାଥ ଭକ୍ଷି ଦେଇକରି ତାହା
ବୋଇଲେ ବିଦୁର ବର ଘେନ ଦେବି ଯାହା ।
ଏସନକ ବର ତାକୁ ଦେଲେ ବ୍ରହ୍ମରାଶି
ବୈକୁଣ୍ଠେ ବିଷ୍ଣୁ ଲୋକରେ ଥାଅ ତୁହି ବସି ।
ଛାମୁରେ କହେ ବିଦୁର କର ଯୋଡ଼ିକରି
ଶୁଣ ତ୍ରୈଲୋକ୍ୟର ନାଥ ବ୍ରହ୍ମାଣ୍ଡାଧିକାରୀ ।
ମଧ୍ୟସ୍ଥ ପଣରେ କାର୍ଯ୍ୟ ନ ହୋଇଲା କିଛି
ବାହୁଡ଼ି ଦର୍ଶନ କର ଧର୍ମକୁ ଶ୍ରୀବସ୍ତି ।
ଗୋବିନ୍ଦ ବୋଇଲେ ତୁହି କହୁ ମନ୍ଦକଥା
ଧର୍ମ ମୋତେ ନିରଞ୍ଜନ ପରାୟେ ଦେବତା ।
ତାଙ୍କ ଆଜ୍ଞାରେ ଅଇଲି ହୋଇ ଦୂତକାରୀ
କାର୍ଯ୍ୟ ସିଦ୍ଧି ନ ହୋଇଲା ଯିବି କେଉଁପରି ।
ବିଦୁର ବୋଲେ ଆସିଛ ସ୍ୱାମୀ ଦୂତପଣେ
ତୁମ୍ଭହୁଁ ଦୂତପଣେ କି ଅଛି ଆନ ଜଣେ ।
ପାଞ୍ଚପଡ଼ା ମାଗୁ ସ୍ୱାମୀ ଯୁଧିଷ୍ଠିର ବାକ୍ୟେ
ତୃପ୍ତି ହେବେ କି ସେମାନେ ଏକଇ ପଡ଼ାକେ ।
ମାନଗୋବିନ୍ଦ ଯେ ଦେଉ ନ ଥିଲା ତ କିଛି
ଏବେ କି ସେ ପାଞ୍ଚଗ୍ରାମ ପାରିବ ମୂରୁଛି ।
ଅଥବା ବିତର୍କ କରି ଘେନାଇବ ଗ୍ରାମ
ତେବେହେଁ ତୃପ୍ତ ହେବେ କି ହେ ପୁରୁଷୋତ୍ତମ
ଶୁଣି କହନ୍ତି ଗୋବିନ୍ଦ ସେ ପଞ୍ଚପାଣ୍ଡବେ
ଏକକୁ ଆରେକ ସେହୁ ବଳବନ୍ତ ସର୍ବେ ।
ପାଞ୍ଚଜଣ ପଞ୍ଚଗ୍ରାମ ଅଛନ୍ତି ଯେ ମାଗି
କାହାର ବଚନ ଏବେ ପାରିବି ମୁଁ ଭାଙ୍ଗି ।
ବୋଲେ ଦେଉ ପାଞ୍ଚଗ୍ରାମ ନ ଦେଉ ବା କିଛି
ସଂଶୟ ଫିଟିଯିବ ଯେ ରହନ୍ତୁ ସେ ମୂର୍ଚ୍ଛି ।

ଶୁଣ ହୋ ବିଦୁର ତୁହି ବଦନ୍ତି ମାଧବ
ତୋହର ବଚନେ ହେବ ସର୍ବ ହାନିଲାଭ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଚଇତନ
ଭୀଷ୍ମ ଦ୍ରୋଣ ଗଲେ ଦୁର୍ଯ୍ୟୋଧନ ସନ୍ନିଧାନ ।
ପ୍ରସ୍ତାବ ବଚନମାନ ବୋଇଲେ ଗାଙ୍ଗେୟ
ମଧ୍ୟ ପାତ୍ରପଣେ ବିଜେ ଦେବ ଯଦୁରାୟ ।
ନାରାୟଣଙ୍କର ତୁଲେ ଋଷିମାନେ ସାକ୍ଷୀ
ଯୁଧିଷ୍ଠି ଆଜ୍ଞାରେ ପାଞ୍ଚପଡ଼ା ମାଗୁଅଛି ।
ଶୁଣି ପ୍ରତିବାକ୍ୟ ଦେଲା ମାନଚକ୍ରବର୍ତ୍ତୀ
ବେନିପଡ଼ା ଦେଇ ତୃପ୍ତି କରିବି ଶ୍ରୀପତି ।
ତହୁଁ ସନ୍ତୁଷ୍ଟ ହୋଇଲେ ଭୀଷ୍ମ ଦ୍ରୋଣ ବେନି
ଏହା ଶୁଣି ପ୍ରତିବାକ୍ୟ ଦେଲାକ ଶକୁନି ।
ଆହେ ଭୀଷ୍ମଦ୍ରୋଣ ତୁମ୍ଭେ ଏମନ୍ତ ବୋଇଲ
ଜଗନ୍ନାଥଙ୍କୁ ଦ୍ୱିଖଣ୍ଡ ପଡ଼ା ଦେବା କଲ ।
ଯଦି ଅବା ପାଞ୍ଚଗ୍ରାମ ଦେବ କୁରୁପତି
ତଥାପି ଗୋବିନ୍ଦ ଚିତ୍ତ ନ ହୋଇବ ଶାନ୍ତି ।
ଯଦି ଅବା ତୁମ୍ଭେ ତାକୁ ଏକଗ୍ରାମ ଦେବ
ଗ୍ରାମେକ ସେ ଚରାଚର ସମସ୍ତ ଘେନିବ ।
ଶୁଣ କୁରୁନାଥ କହେ ନାରାୟଣ କଥା
ସତ୍ୟଯୁଗେ ବଳିରାଜା ଦାନବ ବାରତା ।
ବୃନ୍ଦାର୍କ ନାମେ ରଚିଲା ସେହୁ ଏକଯଜ୍ଞ
ଦେବଲୋକମାନେ ଆସି ନେବେ ହବିର୍ଭାଗ ।
ଦେବତାଙ୍କୁ ଧ୍ୱଂସି ସ୍ୱର୍ଗେ ହୋଇବ ସେ ଇନ୍ଦ୍ର
ବସିବ ଅମରପୁରେ ଘେନି ଦୈତ୍ୟବୃନ୍ଦ ।
ନାରଦ କହନ୍ତେ ଦେବେ ଗଲେ ଭୟକରି
କ୍ଷୀରାର୍ଣ୍ଣବେ ନାରାୟଣେ କରିଲେ ଗୁହାରି ।
ବୋଇଲେ ବଳି ଅନୀତି ଶୁଣ ଯୋଗବାସୀ
ବୃନ୍ଦାର୍କ ଯଜ୍ଞେ ଆମ୍ଭଙ୍କୁ ପକାଇବ ଧ୍ୱଂସି ।
ତବ ହେତୁ ଜାତ ବୋଲି ନ ହେଲୁତୁ କିଛି
ତିନିପୁରେ ଅସୁରଙ୍କ ଭୋଗ ହେଉଅଛି ।
ଆଦି ସିଂହିକା ଗର୍ଭରୁ ଜାତ ହେଲା ରାହୁ
ରାହୁଠାରୁ ଜାତ ହେଲା ପୁତ୍ର ବୀରବାହୁ ।
ବୀରବାହୁ ପୁତ୍ର ହେଲା ଅମ୍ଭୁନାମେ ଦୈତ୍ୟ
ବଜ୍ରକବଚ ବୋଲିଣ ହେଲା ବେନିପୁତ୍ର ।
ବଜ୍ରକବଚର ପୁତ୍ର ହେଲା ହିରଣ୍ୟାକ୍ଷ
ପ୍ରହଲାଦ ନାମେ ପୁତ୍ର ହେଲା ତାର ଦକ୍ଷ ।
ପ୍ରହଲାଦର ନନ୍ଦନ ବୈଲୋଚନ ରାୟେ
ତା ଭାର୍ଯ୍ୟା ମାଳତୀ ଗର୍ଭୁ ବଳି ଜାତ ହୁଏ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ସର୍ବ ଚିନ୍ତାମଣି
ଅସୁର ଭୟରୁ ଏକା ଉଦ୍ଧାରନ୍ତା ପ୍ରାଣୀ ।

ବଳି ଧ୍ୱଂସନରେ ଦେବ ଏବେ କର ବୁଦ୍ଧି
ତହୁଁ ବାମନର ରୂପ ହେଲେ ଦୟାନିଧି ।
ଅତି କ୍ଷୀଣରୂପ ହେଲେ ତହୁଁ ମହାଭାଗ
ବାମନ ଅଙ୍ଗୁଳି ମାତ୍ର ହୋଇଲେ ଉତ୍ସର୍ଗ ।
ଆହେ ଭୀଷ୍ମ କାନ୍ଧେ ଛତା ହସ୍ତେ ବେଦପୋଥି
ଦଣ୍ଡ କମଣ୍ଡଳୁ ଧରି ବଇଷ୍ଣବ ମୂର୍ତ୍ତି ।
ବାମ କାନ୍ଧରେ ପଇତା ଉତ୍ତରୀୟ ଅଛି
କଣ୍ଠେ ତୁଳସୀର ମାଳ ତ୍ରିକଚ୍ଛ ପିନ୍ଧିଛି ।
ଯଜନ ଯାଜନ ଆଦି ଷଟକର୍ମ ମୁଦ୍ରା
ତମ୍ଭାର କୁଣ୍ଡଳ କର୍ଣ୍ଣେ ଭୂଷଣ ସର୍ବଦା ।
ସୁନ୍ଦର ବ୍ରାହ୍ମଣ ଗାତ୍ରେ ଚିତା ଦ୍ୱାଦଶଟି
ସର୍ବଦା ମଉନବ୍ରତ ଶିଶୁକାୟ ଗୋଟି ।
ଅନନ୍ତ ଶାଖାରେ ସେହୁ ବାମନ ମୂରତି
ଏକକରେ ତାମ୍ର ପାତ୍ର ଆଂର କରେ କାତି ।
ମକର ଶୁକଳପକ୍ଷ ପଞ୍ଚମୀର ଦିନ
ଭୃଗୁବାର ନକ୍ଷତ୍ର ଯେ ଉତ୍ତରାଫାଲ୍‌ଗୁନ ।
ବିଷ୍କୁମ୍ଭ ନାମକ ଯୋଗ ବିଷ୍ଟି କରଣରେ
ବାମନ ପ୍ରବେଶ ଯାଇ ବଳିର ଦୁଆରେ ।
ବଳିଦ୍ୱାରେ ଅଶୀଲକ୍ଷ ମାଲ ଥିଲେ ବସି
ବାମନ ଯାନ୍ତେ ନାକରେ ହାତଦେଇ ହସି ।
ମାଲେ ବୋଇଲେ ରେ ଶୁଣ ବାମନ ପୁରୁଷ
ମାପିବା ତୁମ୍ଭଙ୍କୁ ସ୍ୱାମୀ ବେଗ ହୋଇ ଆସ ।
ଚରଣ ଜାନୁ ଅଙ୍ଗୁଳ ଅଟଇ ଯେ ବିଂଶ
ଅନ୍ୟ ଅନ୍ୟ ଅଙ୍ଗ ତାଙ୍କ ହୋଇବ ବତିଶ ।
ସୁବାହୁ ମାଲ ମାପିଲା ତୃଣଖଣ୍ଡେ ଘେନି
ମାପନ୍ତେ ବାମନାଙ୍ଗୁଳ ହୋଇଲେକ ପୁଣି ।
ବାଳୁତର ରୂପଗୋଟି ଆପଣେ ପ୍ରକାଶି
ବଳିଦ୍ୱାରେ ଦ୍ୱିଜବର ମିଳିଲେକ ଆସି ।
ହଟକର୍ମ ମାଲମାନେ କହନ୍ତି ବିତଣ୍ଡା
କେବଣ ଦେଶରୁ ତୁମ୍ଭେ ବିଜେ କଲ ପଣ୍ଡା ।
ହସ୍ତରେ କୁଶ ତଣ୍ଡୁଳ ବେଦକାଣ୍ଡି ପୁଣି
ଅଣ୍ଡିରା କୋକିଳ ପ୍ରାୟ ଶୁଭେ ମନ୍ତ୍ରଧ୍ୱନି ।
ବାମନ ବୋଇଲେ ତୁମ୍ଭେ କୁଶଳରେ ଥାଅ
ବଳିରାଜାର ଛାମୁରେ ବଚନ ଜଣାଅ ।
ବୋଲିବ ଅତିଥି ଦ୍ୱିଜ ବହୁ ଦୂରଦେଶୀ
ବୁଭୁକ୍ଷିତ ହୋଇ ସେହୁ ଦ୍ୱାରେ ଅଛି ବସି ।
ଆର୍ଶୀବାଦ କରୁଅଛି ମୁଁ ତୁମ୍ଭମାନଙ୍କୁ
ରାଜ ଦର୍ଶନ କରାଅ ନେଇଣ ଆମ୍ଭଙ୍କୁ ।
ମାଲେ ବୋଇଲେ ପଣ୍ଡାଏ ଆସ୍ଥାନ ଚହଳ
ପୂର୍ଣ୍ଣାହୂତି ହେବ ଆଜି ତେଣୁ ବଡ଼ଗୋଳ ।

ମହା ମହା ବ୍ରାହ୍ମଣେ ଯେ ନ ପାରନ୍ତି ପଶି
ତୋତେ ଛାମୁକୁ ନିଅନ୍ତେ ହେବୁ ଉପହାସୀ ।
କେହି ନ ଶୁଣିଲେ ଯହୁଁ ସେ ବ୍ରାହ୍ମଣ ବାଣୀ
କିଂଭୂତ ପ୍ରାୟେ ମଣିଲେ ଦେବ ଚକ୍ରପାଣି ।
ଦ୍ୱାରେ ଥାଇ ବ୍ରାହ୍ମଣ ଯେ କରେ ବେଦଧ୍ୱନି
ଗହ ଗହ ଶବଦରେ କମ୍ପେ ପୁର ତିନି ।
ଢୋଲ ଦମାଲୁ ଟମକ ଆଦି ଯେତେ ବାଦ୍ୟ
ସମସ୍ତ ବୁଡ଼ି ଶୁଭିଲା ବେଦଧ୍ୱନି ନାଦ ।
ଶବଦ ଶୁଭିବା ମାତ୍ରେ ଲୟ କଲା ବଳୀ
କାହାର ଶବ୍ଦେ କମ୍ପିଲା ଏହି ମହୀସ୍ଥଳୀ ।
ବଳୀ ରାଜାର ଆଗରେ ଚାରେ ଯେ ଜଣାଇ
ଏକ ବ୍ରାହ୍ମଣ ଆସିଛି ଅତି କ୍ଷୀଣ ଦେହୀ ।
ବସି ବେଦ ଅଧ୍ୟୟନ କରୁଅଛି ଦ୍ୱାରେ
ବ୍ରହ୍ମାଣ୍ଡ କମ୍ପିଲା ବେଦଧ୍ୱନି ଶବଦରେ ।
ଦରହସିତେ ନରେନ୍ଦ୍ର ହୋଇ କୁତୂହଳି
ଆଣ ସେ ଦ୍ୱିଜକୁ ବୋଲି ଆଜ୍ଞାଦେଲେ ବଳୀ
ରାଜା ଆଜ୍ଞା ପାଇକରି ଗଲେ ଚାରଗଣ
ବୋଇଲେ ସ୍ୱାମୀର ଆଜ୍ଞା ଆସ ହେ ବ୍ରାହ୍ମଣ
ତହୁଁ ଚଳିଲେ ବ୍ରାହ୍ମଣ ଧୀର ଧୀର ଗତି
ଦୂରହୁଁ ଦେଖିଲା ରାଜା ମାନବ ମୂରତି ।
ବୟସ ଅଳପ ଅଟେ ଅତି କ୍ଷୀଣକାୟା
ବଡ଼ ଅଗୋଚର ଏହି ବ୍ରାହ୍ମଣର ମାୟା ।
ଦେଖି ଉପହାସ କଲେ ଦାନବ ସକଳେ
ବିଜୟ କଲେ ବାମନ ବଳୀ ଯଜ୍ଞଶାଳେ ।
ଇଦଂବାକ୍ୟ ବଳୀରାଜା କହିଲା ଆହ୍ଲାଦେ
ଅପୂର୍ବ ବ୍ରାହ୍ମଣ କାହୁଁ ଆସିଲା ଏ ହାଦେ ।
କୁଶହସ୍ତ ହୋଇକରି ଦେବ ଦଇତ୍ୟାରି
ତଣ୍ଡୁଳ ପକାଇ ତାକୁ ଆଶୀର୍ବାଦ କରି ।
ପ୍ରଥମରେ ଜାଣିପାରି ମହାମନ୍ତ୍ରବାଦୀ
ପଚାରିଲେ ପଣ୍ଡା ତୁମ୍ଭେ ଅଟ କେଉଁ ବେଦୀ ।
କେଉଁ ଗୋତ୍ରେ ଜନ୍ମିଅଛ କି ନାମ ବୋଲାଅ
କେଉଁ ପ୍ରବର ଅଟଇ ସଂଜ୍ଞା କିସ କହ ।
କିପାଇଁ ଆଗତ ବୋଲି ବଚନ ସମ୍ପାଦି
ବିସ୍ତାରିଣ କହ ତୁମ୍ଭେ କେଉଁ ମନ୍ତ୍ରବାଦୀ ।
ହେ ପଣ୍ଡା ବୟସେ ସାନ ବାଳତନୁ ଭାବ
ତୁମ୍ଭ ବେଦ ଅଧ୍ୟୟନେ କମ୍ପେ ସର୍ବଠାବ ।
ବ୍ରାହ୍ମଣ ସମସ୍ୟା ଦ୍ୟନ୍ତି ଅମୃତର ବାଣୀ
ନିରାକୁଳ ଦେଶ ଯହିଁ ସ୍ଥିତି ବୈତରଣୀ ।
ବାରାହୀ ବୋଲି କରିଣ ଅଛଇ ଶାସନେ
ଚଇତନ ପାଟଣାର ଅତି ସନ୍ନିଧାନେ ।
ସେହି ଶାସନର ଆମ୍ଭେ ଅଟୁ ପାଣିଗ୍ରାହୀ
ନିରଞ୍ଜନ ଧର୍ମଦାସ ସେହୁ ବେନି ଭାଇ ।
ମାତାର ନାମ ଆମ୍ଭର ଅଟେ ଅନନ୍ତାଈ
ପିତା ନାମ ନିରଞ୍ଜନ ପଣ୍ଡା ଯେ ଅଟଇ ।
ବିହୃଦ୍ବର ଦାସ ପଣ୍ଡା ଆମ୍ଭ ଜ୍ୟେଷ୍ଠଭାଇ
ଯାହା ପୁଚ୍ଛା କଲ ରାଜା ଶୁଣ ମନଦେଇ ।
ନିରାକୁଳବଂଶୀ ଆମ୍ଭେ ଜଳପୂର୍ଣ୍ଣ ଗୋତ୍ରୀ
ଆମ୍ଭର ନାମ ବାମନ ପଣ୍ଡା ଶୁଦ୍ଧମୂର୍ତ୍ତି ।
ଯାଗ ଯଜ୍ଞ ପ୍ରତିଷ୍ଠାଦି କର୍ମେ ଯେ ପ୍ରବୀଣ
ଦାମ୍ଭିକ ଧାର୍ମିକ ଦେଖି ଆସୁ ସନ୍ନିଧାନ ।
ଧନ୍ୟ ଧନ୍ୟ ମହିମା ତୋ ଦାନେଶ୍ୱର ବଳି
ବଡ଼ ମହିମା ରହିଲା ତୋର ମହୀସ୍ଥଳୀ ।
ଦାନେ ଶୂରବନ୍ତ ତୁହି ଦୈତ୍ୟ କୁଳଗୋତ୍ରି
ଅକ୍ଷୟ କୀର୍ତ୍ତି ରଖିଲୁ ତୁହି ଏହି କ୍ଷିତି ।
ଅନେକ ବିପ୍ର କହିଲେ ତୋହର ମହିମା
ବିଚାରି ଜାଣିଲୁ ତୁ ଯେ ପ୍ରତ୍ୟକ୍ଷେ ମହାତ୍ମା ।
ଯାହା ଶୁଣିଥିଲୁ ଏବେ ପ୍ରତ୍ୟକ୍ଷେ ଦେଖୁଛୁ
ମୋତେ ମହାରାଜା କିଛି ଦେବାକୁ ନ ଇଚ୍ଛୁ
ବଳୀ ବୋଲେ ମାଗ ବିପ୍ର ଯାହା ହୁଏ ଚିତ୍ତ
ଦେଇ ପୂରାଇବି ମୁହିଁ ତୋର ମନୋରଥ ।
ସେ ବଳୀରାଜା ବୋଇଲା ବାମନର ଆଗ
ପୂର୍ଣ୍ଣ ଆହୁତି ଦେବଇଁ ଶେଷ ହେଉ ଯାଗ ।
ଅମର ବିନାଶ ପାଇଁ ମୋହର ଆହୁତି
ଐରାବତ ସହ ଇନ୍ଦ୍ର ପଡ଼ିବ ସଂପ୍ରତି ।
ଅନୁଷ୍ଟୁପ ମହାରଷି ଅଟନ୍ତି ଯାଜ୍ଞିକ
ଆହୂତି ସମ୍ପୂର୍ଣ୍ଣ ପରେ ଦେବି ଯା ମୋ ବାକ୍ୟ ।
ବଳୀର ବଚନେ ଦ୍ୱିଜ କଲେ ବେଦଧ୍ୱନି
ଆକାଶ କି ଝଡ଼ିପଡ଼େ ଟଳିଲା ଧରଣୀ ।
ରହ ରହ ବୋଲିକରି ବୋଲେ ବଳୀରାୟେ
ତୋର ବେଦଧ୍ୱନି ଶୁଣି କମ୍ପେ ମୋର କାୟେ
ଲକ୍ଷେ ବରଷ ହୋଇଲା ଦେଉଅଛି ଦାନ
ନ ଦେଖିଲି ବ୍ରାହ୍ମଣ ମୁଁ ତୋହର ସମାନ ।
ଏହା କହି ବୋଲେ ମାଗ ତୋହର ଯେ ଇଚ୍ଛା
ଯାହା ତୋ କଲ୍ୟାଣେ ଥିବ ପୂରାଇବି ବାଞ୍ଛା ।
ଜଳ ଭରିଣ ଡାହାଣାବର୍ତ୍ତିକ ଶଙ୍ଖରେ
ଆପଣେ ବାମନ ଦେଲେ ବଳୀରାଜା କରେ
ମହାମନ୍ତ୍ର ସୁମରିଣ ଜଳ ତିଳ ଭରି
ବଳୀରାଜା ହସ୍ତେ ଦେଲେ ସଂକଳପ କରି ।
ତଳହସ୍ତ କରିଣ ଯେ ମାଗିଲେ ବାମନ
ଉପର ହସ୍ତରେ ବଳୀ ଦେଉଅଛି ଦାନ ।

ବଳୀ ବୋଲେ ମାଗ ଦ୍ୱିଜ ଯେତେକ ଅଛଇ
ତୋ ବଂଶର ଦରିଦ୍ରତା ଯେସନେ ଫିଟଇ ।
ବାମନ ବୋଲନ୍ତି ତେବେ ଶୁଣ ମହାରାଜ
ଧନ ସମ୍ପଦରେ ମୋର କିଛି ନାହିଁ କାର୍ଯ୍ୟ ।
ଏହା କହି ସାକ୍ଷୀକଲେ ସେ ଦିଗପାଳଙ୍କୁ
ଆବର ସାକ୍ଷୀ କରନ୍ତି ଇନ୍ଦ୍ର ସେ ସୂର୍ଯ୍ୟଙ୍କୁ ।
ମେଘମାନଙ୍କୁ ରାଇଣ ସାକ୍ଷୀ ଯେ କରନ୍ତି
ଚାରିଦିଗକୁ ଚାହିଁଣ ପୁଣି ସେ ବୋଲନ୍ତି ।
ଉପର ହସ୍ତରେ ଦାନ ଦେଉଅଛି ବଳୀ
ସାମାନ୍ୟ ଦାନ ମୋହର ଅଟେ ତ୍ରି ଅଙ୍ଗୁଳି ।
ଦାନ ଦ୍ୟନ୍ତେ ଶୁକ୍ରମୁନି ବଚନ ବୋଇଲା
ରହ ରହ ବୋଲି ରାଜା ଶଙ୍ଖ ଛଡ଼ାଇଲା ।
ରହ ରହ ରାଜା ତୁହି କାରେ ଦେଉ ଦାନ
ସାମାନ୍ୟ ପ୍ରାୟ ମଣୁ କି ଏ ଦ୍ୱିଜ ବାମନ ।
ଅସଂଖ୍ୟ ସମ୍ପଦ ରାଜା ଦେଖିଣ ତୋହର
ନାରାୟଣ ହୋଇଛନ୍ତି ବାମନାବତାର ।
ଦେବେ ଅଗୋଚର ଅଟେ ଏ ତୋର ସମ୍ପଦ
ଗୋପନେ ଗୋବିନ୍ଦ ତୋତେ ଚିନ୍ତନ୍ତି ପ୍ରମାଦ
ବଳୀ ବୋଇଲା ତୁମ୍ଭେ ତ ଭୃଗୁକୁଳେ ଜାତ
କେମନ୍ତେ ଜନ୍ମ କରିଲେ ତୁମ୍ଭ ପିତାମାତ ।
ଅଳପ ବହୁତ ଦାନ ଯେ ଅବା ଦିଅଇ
ବାସୁଦେବ ପ୍ରାପ୍ତହେଉ ବାଞ୍ଛା ସେ କରଇ ।
ଦାନଦ୍ୟନ୍ତେ ନାରାୟଣ ମୁଖରେ ଉଚ୍ଚାରି
ଯେବେ ଏ ବାମନ ଗୋଟି ସାକ୍ଷାତରେ ହରି ।
ତେବେ ଏହାହୁଁ ଅଧିକ କି ଅଛି ସୁଲଭ
ଏ ସବୁ ସମ୍ପଦ ମୋର ଘେନୁ ପଦ୍ମନାଭ ।
ଶୁକ୍ର ବୋଇଲା ଅର୍ଜିଛୁ ଯେତେ ତୁ ବିଭବ
ଚିତ୍ରକୂଟ ମାୟାକରି ନେବେ ବାସୁଦେବ ।
ବଳୀ ବୋଇଲା ମନ୍ତ୍ରୀ ହେ ନୁହଇ ଏମନ୍ତ
ପୁଣ୍ୟଥିଲେ ଦାନଦେବି ଏ ବାମନ ହସ୍ତ ।
ଧର୍ମ ଅର୍ଥ କାମ ମୋକ୍ଷ ଏହୁ ଚଉବର୍ଗ
ଆଜ ପ୍ରାପ୍ତ ହେବି ମୁହିଁ ଯେ ଅକ୍ଷୟ ସ୍ୱର୍ଗ ।
ପୁଣି ବଳେ ଶୁକ୍ର ମନ୍ତ୍ରୀ ବଳୀହସ୍ତ ଧରି
ଦାନ ଦିଅନ୍ତେ ଶଙ୍ଖକୁ ଘେନିଲା ଓଟାରି ।
ଦେଖି କୋପାନଳ ହେଲେ ବାମନ ମୂରତି
ରାଗେ ବାମକରେ ପେଲିଦେଲେ ଯେ ଶ୍ରୀପତି
ବାମନରେ କରେ ଯେଉଁ କୁଶବଟୁ ଥିଲା
ସେ କୁଶାଗ୍ର ଲାଗି ଶୁକ୍ର ଆଖି ଫୁଟିଗଲା ।
ନୟନ ଫୁଟି ଶୋଣିତ ବହେ ଘନ ଘନ
ବଳୀ ବୋଲେ ଅକାରଣେ ଲଭିଲୁ କଷଣ ।

ଦେଉଥିଲି ଦାନ ମୁହିଁ କହିଲୁ ନିବାରି
ପ୍ରତ୍ୟକ୍ଷେ ଫଳିଲା ଫଳ ନ ପାରୁ ବିଚାରି ।
ମାଗ ହୋ ବାମନ ବଳୀ କହଇ ବଚନ
ଶଙ୍ଖେ ଜଳତିଳ ଘେନି ବିଜେ ଭଗବାନ ।
ବାମନ ବୋଲେ ତ୍ରିପାଦ ଭୂମି ଦିଅ ମୋତେ
ବିସ୍ତାର ହୋଇବ ମୋର ତିନିପାଦ ଯେତେ ।
ମାଗନ୍ତେ ଯେତେ ହୋଇବ ଦାନଦେବୁ ପୃଥ୍ୱୀ
ଶୁଣି ଆଶ୍ଚର୍ଯ୍ୟ ହୋଇଲା ବଳୀ ନରପତି ।
ବିଚାର କରିଣ କହ ହେ ଦ୍ୱିଜ ସନ୍ତତି
ଏହି ଦାନ ମାଗୁ ମୋତେ ହୋଇ ବାଳମତି ।
ପାଞ୍ଚଅଙ୍ଗୁଳି ବିସ୍ତାର ବେନି ପାଦଗୋଟି
ଏଥେ ତିନିପାଦ ଭୂମି କାହିଁ ତୋତେ ଅଣ୍ଟି ।
ବ୍ରାହ୍ମଣ ବୋଲେ କିଞ୍ଚିତ ମାତ୍ର ନେବି ଦାନ
ବହୁତ ଦାନ ନେବାକୁ ନୁହଇ ଭାଜନ ।
ଅଳ୍ପମନ୍ତ ଜାଣି ଯେହୁ ବହୁଦାନ ମାଗି
ନାଶକର ଦଣ୍ଡେ ସେହି ହୁଏ କୃମିଭୋଗୀ ।
ବଳୀ ବୋଲେ ତିନିପାଦ ଭୂମି ହେବ କେତେ
ତୋଟା ଖଣ୍ଡିଏ ନ ଥିଲେ ବଞ୍ଚିବୁ କେମନ୍ତେ ।
ବାମନ ବୋଇଲା ବଳୀ ମୁହିଁ ନୁହେଁ ଲୋଭୀ
ଅଧିକ ନ ମାଗେ ତିନିପାଦ ଭୂମି ନେବି ।
ବଳୀବୋଲେ ମୁହିଁ ଦାନୀ ତୋତେଦେବି ଦାନ
ମୋହର ଦାନନେବାକୁ ନୋହିଲୁ ଭାଜନ ।
ଏବେ ଆବୋର ତ୍ରିପାଦ ଭଦ୍ରାନଦୀକୂଳୁ
ଦେଖୁ ଦେଖୁ ବାମନାଙ୍ଗ ବଢ଼େ ବେଳୁବେଳୁ ।
ବଳୀ ବୋଇଲେ ବାମନ ତୋ ଚରଣ ବଡ଼ା
ତାହା ଶୁଣିଣ ବାମନ ଫେଇଲା ଦୋସଡ଼ା ।
ବିସ୍ତାରି ଦ୍ୟନ୍ତେ ବାମନ ବେନିପାଦ ଗୋଟି
ଏକାବେଳେ ଘୋଟିଗଲା ସସାଗରା ସୃଷ୍ଟି ।
ଦେଖି ଆଶ୍ଚର୍ଯ୍ୟ ହୋଇଲା ମହାରାଜା ବଳୀ
ଶୁକ୍ରର କଥା ସୁମରି ହୃଦଗତେ ଭାଳି ।
ସାଧୁ ସାଧୁ ମନ୍ତ୍ରୀ ତୁହି କହିଥିଲୁ ଯାହା
କାଳେ ଫଳିଲା ଆସିଣ ନ ଚେତିଲି ତାହା ।
ମୋର ନିମନ୍ତେ ଶୁକ୍ରର ଚକ୍ଷୁ ନାଶଗଲା
ଏ ବାମନ କୂଟ ମୋତେ ଅଗୋଚର ହେଲା ।
ତହୁଁ ବାମନ ବୋଇଲେ ଦିଅ ଆଉପାଦେ
ବଳୀ ହୋଇଲା ଦେଲି ମୁଁ ଆକାଶକୁ ହାଦେ
ଏକ ପାଦକରେ ପୃଥ୍ୱୀ ଆରେକ ଆକାଶ
କୋଟି ବ୍ରହ୍ମାଣ୍ଡ ଘୋଟିଲେ ପ୍ରଭୁ ହୃଷୀକେଶ ।
ବାମନ ବୋଇଲେ ବଳୀ ଆଉପାଦେ ଦିଅ
ସଂକଳ୍ପ କରି ନ ଦେଲେ ଧର୍ମ ହୁଏ କ୍ଷୟ ।

ବଳୀ ବୋଇଲା ପାରିବି ଆନ ଦାନଦେଇ
ଭୋ ବାମନ ତୋର ଆଉ ଅନ୍ୟ ପାଦ କାହିଁ ।
ତହୁଁ ହୁଂକାର ଶବଦ କଲେ ଜଗନ୍ନାଥ
ନାଭି କମଳରୁ ପାଦେ ହୋଇଲା ନିର୍ଗତ ।
ବଳୀ ବୋଲେ ବେନିପାଦେ ଘୋଟିଲୁ ଜଗତ
ଆଉ କିଛି ନାହିଁ କିସ ଦେବି ଜଗନ୍ନାଥ ।
ବାମନ ବୋଇଲେ ତୁହି ଦାନେଶ୍ୱର ବଳୀ
ସତ୍ୟଭଗ୍ନ ହୋଇବୁ କି ତୁହି ଆନଭଳି ।
ସଂକଳ୍ପ କରି ନ ଦେଲେ ହୁଏ ବଡ଼ ଦୋଷ
ଗତଧର୍ମ ନାଶଯାଇ ନରକେ ନିବାସ ।
ଶୁଣି ମଥା ପୋତିଦେଲା ମହାରାଜା ବଳୀ
କମଳପାଦ ତା ମାଥେ ଦେଲେ ବନମାଳୀ ।
ମେରୁସମ ତୁଲ୍ୟ ଅଟେ ବଳୀରାଜା କାୟେ
କିଞ୍ଚିତେ ପାତାଳେ ଚାପିଦେଲେ ଦେବରାୟେ
ଇଦଂ ବାକ୍ୟରେ ଶକୁନି କହିଲା ଏ ଭାଷା
କହ୍ନାଇ ବୋଲି ସେ ଅଟେ ତାକୁ କି ଭରସା ।
ବାମନ ରୂପକୁ ଧରି ଏହୁ ଅବତରି
ତିନିପାଦେ ଘୋଟିଗଲା ଦେଖ ତିନିପୁରୀ ।
ଦେଇ ନ ପାରିଲା ତିନିପାଦ ଭୂମି ବଳୀ
ପଞ୍ଚଗ୍ରାମ ଦେବ ତାକୁ ତୁମ୍ଭେ କେଉଁଭଳି ।
ପଞ୍ଚଗ୍ରାମ ଛାଡ଼ି ଯେବେ ଦେବ ଏକଗୋଟି
ଗ୍ରାମକେ ସେ ଚରାଚର ପୃଥ୍ୱୀ ଯିବ ଘୋଟି ।
ଏମନ୍ତ କରିଣ ହରି ପଡ଼ାଏ ମାଗିବ
ବିଶ୍ରାମ କରିବାପାଇଁ ଠାବ ନ ମିଳିବ ।
ଏଥିରୁ ଅନ୍ୟଥା ଯେବେ ହେବ ମୋର କଥା
ମନ୍ତ୍ରୀପଣ ନ କରିବି ରାଜ୍ୟରେ ସର୍ବଥା ।
ଚିତ୍ରକୂଟ ବୁଦ୍ଧିଯୋର ଦେବଙ୍କୁ ଅଦୃଶ୍ୟ
ଏଡ଼େବଡ଼ ସମରାଷ୍ଟ୍ର ନ କର ବିନାଶ ।
ହେ ବାମନରୂପୀ ପ୍ରଭୁ ଦେବ ତ୍ରିପୁରାରି
ଶାରଳାଦାସକୁ ଭବଜଳୁଁ କର ପାରି ।



## ଦୁର୍ଯ୍ୟୋଧନ ଦୁଇଖଣ୍ଡ ପଡ଼ାଦେବା ନିମନ୍ତେ ଭୀଷ୍ମଙ୍କଠାରେ ଇଚ୍ଛା ପ୍ରକାଶ ଓ ଶକୁନିର ଅମତ ଏବଂ ବାବନାଭୂତର ବିବରଣ

ଅଗସ୍ତିଙ୍କୁ ପୁଚ୍ଛାକଲେ ବିଲଙ୍କ ରାଜନ
ବିଦୁର ଗୃହକୁ କୃଷ୍ଣ କରିଲେ ଗମନ ।
ତଦପରେ କି ବିଚାର କଲା କୁରୁନାଥ
ପଡ଼ା ଦେବାକୁ ଶକୁନି ସର୍ବଦା ଅମତ ।
ଭୀଷ୍ମଦ୍ରୋଣ ଆଦି କରି ତହିଁ ମନାନ୍ତର
ଏମନ୍ତ ସ୍ଥଳରେ ହେଲା କେବଣ ବିଚାର ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଭୀଷ୍ମଦେବ ବୋଇଲେ ସେ ବଳୀ ଦାନ ଦେଲା
ଗତି ଲଭି ପାତାଳରେ ନୃପତି ହୋଇଲା ।
ଆକାଶରେ ଇନ୍ଦ୍ର ପୁଣି ହେବ ସମୟକେ
ଏମନ୍ତ ସମ୍ପଦ ତାକୁ ଦେବ ଦେଲେ ସୁଖେ ।
ଶକୁନି ବୋଇଲା ମୁହିଁ କହେ ଏକ କଥା
ଶୁଣ ହେ ଗାଙ୍ଗେୟ ଏବେ ପୂର୍ବର ବାରତା ।
ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ୍ରରାଷ୍ଟ୍ର ମଣ୍ଡଳେ
ବ୍ରହ୍ମାଙ୍କର କୁଶସ୍ଥଳୀ ବୈତରଣୀ କୂଳେ ।
ଦେବପୁର ବୋଲି କରି ଏକଇ ଶାସନ
ତହିଁ ଲକ୍ଷେ ବାଆସ୍ତରି ଥାନ୍ତି ମହାଜନ ।
ସେହି ନଗର ନିବାସୀ ଆଠଗୋଟି ବାଳୀ
ବୟସ ଧର୍ମରେ ସର୍ବେ ଧୂଳିଖେଳ ଖେଳି ।
ଏସନକ ସମୟରେ କପିଳାସବାସୀ
ବୃଷେ ଗିରିଜା ଶଙ୍କର ବିଜେକଲେ ଆସି ।
ଶୂନ୍ୟେ ଥାଇ ସେମାନଙ୍କୁ ଦେଖି ବିଶ୍ୱନାଥ
ବୋଇଲେ ବଡ଼ କୌତୁକ ଅଟେ ଏ ସଙ୍ଗାତ ।
ପାର୍ବତୀ ବୋଲନ୍ତି ଏହା ବାଲ୍ୟକାଳ ଖେଳ
ଏ ଖେଳ ଖେଳନ୍ତି ସଦା କୁମାରୀ ସକଳ ।
ପିତାଙ୍କ ଗୃହରେ ଆମ୍ଭେ ଥିଲୁ ଯେତେବେଳେ
ଏହି ଖେଳ ଖେଳୁଥିଲୁ କୁମାରୀଙ୍କ ମେଳେ ।
ଈଶ୍ୱର କହିଲେ ତହୁଁ ଦେବୀ ଆଗେ ଆସି
ସେ ତ ଗୃହବାସୀ କି ନ ଜାଣନ୍ତି ଭିକ୍ଷାସୀ ।
ଉମା ବୋଇଲେ ସ୍ୱାମୀ କହେ ସଦା ଯେହୁ ବାଇ
ସଜ୍ଜନ କଥା ତହିଁକି ଲୋଡ଼ିଲେ ମିଳଇ ।
ବାଲିଘର ବାଲିଭାତ ବାଲିତୁଣ କରି
ସେଠାରେ ମାଗିଲେ କିସ ପାଇବ ଭିକାରୀ ।
ଶଙ୍କର ବୋଇଲେ ତୁମ୍ଭେ ଥାଅ ଅନ୍ତରୀକ୍ଷ
ମୁହିଁ ସେ ସ୍ଥାନକୁ ଯାଇ ତାଙ୍କୁ ମାଗେ ଭିକ୍ଷ ।
ପାର୍ବତୀ ବୋଇଲେ ଏବେ ଏ ରୂପ ଦେଖିବେ
ଭୟରେ ବିଷଜ୍ୱାଳାରେ ସମସ୍ତେ ମରିବେ ।
ଗିରିଜାଙ୍କୁ ରଖାଇଣ ଦେବ ଦେବ କାଶୀ
ବାଳକ ସନ୍ନ୍ୟାସୀ ରୂପ ତହିଁ ପରକାଶି ।
ଏକଇ ବଦନ ସ୍ୱାମୀ ଶିରରେ ଶୀତାଂଶୁ
ବହଇ ଧବଳାଙ୍ଗୀ ଯେ ତ୍ରିବେଣୀ ଆକାଶୁ ।
ଛଦ୍ମରୂପକୁ ଧାରଣ କଲେ ତ୍ରିଅମ୍ବକ
କଣ୍ଠେ ତୁଳସୀର ମାଳା ସଙ୍ଗରେ ହୀରକ ।

ଶୁଦ୍ଧ ସ୍ଫଟିକର ମୁଦ୍ରା ଶୋଭେ ବେନିକର୍ଣ୍ଣେ
ଜଗତକୁ ମୋହୁଅଛି ସହାସ୍ୟ ବଦନେ ।
ଡାକି ଡମ୍ବରୁ ହସ୍ତରେ ଡିବି ଡିବି ବାଜେ
କ୍ଷୁଦ୍ର ଘଣ୍ଟିକା କିଙ୍କିଣୀ କଟିଦେଶେ ସାଜେ ।
ଅନନ୍ତ ଉରଗ ଶୋଭେ ଶ୍ରୀଅଙ୍ଗେ ବାହୁଟି
ବିଭୂତି ଲେପନ ଦେହ ପିନ୍ଧି ଚିରକୁଟି ।
ଭୁଜରେ ଯାମଳା ଲାଉ କରରେ ତ୍ରିଦଣ୍ଡୀ
ଝଟକଇ ଚଉକତି ତିଳକ ଶ୍ରୀଖଣ୍ଡି ।
ଏମନ୍ତ ସ୍ୱରୂପ ସ୍ୱାମୀ ବାଳୁତ ପୁଆଳି
କନ୍ୟାଙ୍କ ନିକଟେ ଗଲେ ହୋଇ କୁତୂହଳି ।
ଡିବିଡିବି ଡମ୍ବରକୁ ସୁସ୍ୱରରେ ବାଇ
କୁମାରୀଙ୍କ ଖେଳଘରେ ପ୍ରବେଶିଲେ ଯାଇ ।
ଦେଖିକରି ହସିଲେ ସେ ବାଳୁତ କୁମାରୀ
ମିଛିକା ଘରକୁ ଦେଖ ସତିକା ଭିକାରୀ ।
ଧୂଳିରେ ଅନ୍ନ ବ୍ୟଞ୍ଜନ କରିଛୁ ସଙ୍ଗାତ
କିସ ଭିକ୍ଷା ଦେବା ନେଇ ଏହାଙ୍କର ପାତ୍ର ।
ସୁସଞ୍ଚ କରି ପାତ୍ରରେ ପୂରାଇଲେ ଧୂଳି
ସଦାଶିବଙ୍କ ପାତ୍ରରେ ତାହା ଦେଲେ ଟୋଳି ।
ହରଷ ଭାବରେ ବାଳୀ ଦେଲେ ଧୂଳିମୁଷ୍ଟି
ତାହା ଦେଖିଣ ଆନନ୍ଦ ହୋଇଲେ ଧୂର୍ଜ୍ଜଟୀ ।
ଈଶ୍ୱର ପ୍ରଶଂସା କଲେ ଧନ୍ୟ ତୁମ୍ଭ ସତ୍ୟ
ବାଳୁତ କୁମାରୀ ହୋଇ ଏତେକ ନିୟତ ।
ଆନନ୍ଦରେ ସୁପ୍ରସନ୍ନ ହୋଇ ସଦାନନ୍ଦ
ବଚନ କହିଲେ ସ୍ୱାମୀ ହସି ମନ୍ଦ ମନ୍ଦ ।
ସତମନେ ତୁମ୍ଭେମାନେ ଦେଲ ଧୂଳିଭିକ୍ଷା
ତୁମ୍ଭମାନଙ୍କୁ ସର୍ବଦା ଶିବ କରୁ ରକ୍ଷା ।
କୋଟିକଳ୍ପ ଆୟୁ ହେବ ବସ ଯାଇ ସ୍ୱର୍ଗେ
ଯୁବାବସ୍ଥା ହୋଇଥାଅ କୋଟି କୋଟି ଯୁଗେ ।
ରମ୍ଭା ଉର୍ବଶୀ ମେନକା ପୁଣି ଚିତ୍ରଲେଖା
କାମସେଣା ମଦନିକା ମୋହିନୀ ଅମ୍ବିକା ।
ଯୁଗ ଭୋଗକର ହୋଇ ଅଷ୍ଟ ଅପସରୀ
ଏହିମତେ ମୋହୁଥାଅ ଦେବ ସ୍ୱର୍ଗପୁରୀ ।
କୋଟିଏ ଇନ୍ଦ୍ର ସ୍ୱର୍ଗରେ ହୋଇ ନାଶଯିବେ
ତୁମ୍ଭର ଏ ଯୁବାବସ୍ଥା ନ ତୁଟିବ କେବେ ।
ଶକୁନି ବୋଇଲେ ତୁମ୍ଭେ ଶୁଣ ହେ ଗାଙ୍ଗେୟ
ଶିବ ବାକ୍ୟେ ଅଷ୍ଟସଖୀ ହୋଇଲେ ଅକ୍ଷୟ ।
ବଳୀ ରାଜାର ଭାରିଯା ନାମ ଲୀଳାବତୀ
ଅର୍ଘ୍ୟଘେନିଣ ମିଳିଲା ବାମନର କତି ।
ବୋଲେ ବାମନ ତ୍ରୈଲୋକ୍ୟନାଥ ତୁ ବୋଲାଉ
ଜଗତ ଠାକୁରପଣ ତୋର ଧିକ ହେଉ ।
ସଦାଶିବଙ୍କର ବର ଶୁଣ ତୁ ବାମନ
ରେଣୁ ଭିକ୍ଷାରେ ପାଇଲେ ଅମର ଭୁବନ ।
ମୋର ସ୍ୱାମୀ ତିନିଲୋକ ତୋତେ ଦାନ ଦେଲା
ସମସ୍ତ ସମ୍ପଦ ଦେଇ କାରଣ ନୋହିଲା ।
ଧିକ ଧିକ ବାମନ ହେ ତୁମ୍ଭ ପାତ୍ର ଗୋଟି
ସ୍ୱାମୀ ମୋର ନାଶଗଲା ତୁମ୍ଭ ପାଦେ ଖଟି ।
ଆହେ ତିନିଲୋକ ଜନେ ଏବେ ସାକ୍ଷୀଥାଅ
ହେ ବାମନ ଏହିରୂପେ ଭିକ୍ଷା ମାଗିଖାଅ ।
ଈଶ୍ୱରଙ୍କ ବରଗୋଟି ପରମ ମୌଷଧି
କଳ୍ପ କଳ୍ପ ଦାନ ଦେଲେ ସର୍ବକାର୍ଯ୍ୟ ସିଦ୍ଧି ।
ଶୁଣ ଗାଙ୍ଗେୟ ଆଗରୁ ଅଛି ଏହି ବାଣୀ
ଦେଲେହେଁ ତୃପ୍ତ ନୋହିବ କେଭେ ଚକ୍ରପାଣି
ଦାନୀ ଭକତିରେ ଯେହୁ ନ ଘେନଇ ସେବା
ଦେଇ ତୃପତ ତାହାକୁ କରିବ କିଏ ବା ।
ସପତ ବ୍ରହ୍ମାଣ୍ଡ ଯେବେ ଦେବ ତାଙ୍କ ହସ୍ତେ
ଶାନ୍ତ ବା ତୃପତ ସେହି ନ ହୋଇବ ଚିତ୍ତେ ।
ଶାସ୍ତ୍ରର ସଙ୍ଗତ କଥା କହିଲା ଶକୁନି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶୁଣି ହେଲେ ତୁନି ।
ଆସ୍ଥାନରୁ ଉଠିଗଲେ ଯହୁଁ ଭୀଷ୍ମ ଦ୍ରୋଣ
ତହୁଁ ଦ୍ରୋଣ କୃପାଚାର୍ଯ୍ୟ ଚଳିଲେ ତତ୍‌କ୍ଷଣ ।
ଶଲ୍ୟ ଶକୁନି ଆବର କର୍ଣ୍ଣର ସହିତେ
ଯେ ଯାହା ମନ୍ଦିରେ ଗଲେ ଭୋଜନ ନିମନ୍ତେ ।
ଚନ୍ଦ୍ରଶାଳାର ପୁରକୁ ବିଜେ ଦୁର୍ଯ୍ୟୋଧନ
ଅନ୍ଧ ଗାନ୍ଧାରୀ ସଞ୍ଜୟ କରେ ଆଗମନ ।
ଚନ୍ଦ୍ରଶାଳା ମନ୍ଦିରରେ ବିଜେ ଧୃତରାଷ୍ଟ୍ର
ପ୍ରବେଶ ହୋଇଲେ ସର୍ବ ଅମନାତ୍ୟ ଶ୍ରେଷ୍ଠ ।
ସକଳେ ମିଳନ୍ତେ ଦୁର୍ଯ୍ୟୋଧନ ସନ୍ନିଧାନ
ଦେଖି ପୂଜା ବିଧି କଲା ରାଜା ଦୁର୍ଯ୍ୟୋଧନ ।
ଇଦଂ ବାକ୍ୟ ଧୃତରାଷ୍ଟ୍ର ପୁଚ୍ଛେ ଶୁଭବାଣୀ
ଗାନ୍ଧାରୀ ବୋଇଲା ଶୁଣ କୁରୁ ଚୂଡ଼ାମଣି ।
ଶୁଣ ବାବୁ ମହାରାଜା ମାନ ଚକ୍ରବର୍ତ୍ତୀ
ଲକ୍ଷେ ରାଜା ମୌଡ଼ମଣି ମଣ୍ଡଳାଧିପତି ।
ପନ୍ନଗନାରାୟଣ ତୁ ବିଷ୍ଣୁ ଅବତାର
ଭାରାଭର ନିବାରି ତୁ ରଖିବୁ ସଂସାର ।
ଏହି ସୋମବଂଶେ ଥିଲେ କେତେ କେତେ ରାଜା
ତୋହ ପରାୟେକ କେହୁ ନ ପାଇଲେ ପୂଜା ।
ପାଣ୍ଡବ ତୋର ସୋଦର ଯେହୁ ପଞ୍ଚଭ୍ରାତ
ତୋର ଥାଆନ୍ତେ ସେମାନେ ହେବେ କି ଅନାଥ
ଦେଖିବୁ ପଞ୍ଚପାଣ୍ଡବେ ଏକା ଆସ୍ଥାନରେ
ଲକ୍ଷେ ରାଜା ସହ ଖଟିଥିବେ ତୋ ପୟରେ ।

ବାବୁ ସେ ପଞ୍ଚପାଣ୍ଡବ ଅଟନ୍ତି ପଞ୍ଚାଗ୍ନି
କୃଷ୍ଣ ସଖା ହୋଇଛନ୍ତି ବାୟୁ ରୂପ ଘେନି ।
ଅଗ୍ନି ସହିତ ପବନ ଏକତ୍ର ହୋଇଲେ
ମହା ଅରଣ୍ୟ ଦହଇ ଗାନ୍ଧାରୀ ବୋଇଲେ ।
ବିଚାର ନକରୁ କିପାଁ ଏହା କୁରୁମଣି
ପାଣ୍ଡବଙ୍କ ସାହାପକ୍ଷ ଛନ୍ତି ଚକ୍ରପାଣି ।
ସୁଭଦ୍ରା ହରଣେ କୋପକଲେ ବଳରାମ
ରଣେ ଜିଣିବାକୁ ତାକୁ ନ ହୋଇଲେ କ୍ଷମ ।
ଦ୍ୱାରକା ପୁରେ ଅର୍ଜ୍ଜୁନ ଏଡ଼େ କୃତ୍ୟ କଲା
ରାମକୃଷ୍ଣଙ୍କ ଭଉଣୀ ସୁଭଦ୍ରା ହରିଲା ।
ସାତବଂଶ ସୈନ୍ୟ ସାଜି ରାମ କଲେ ଗୋଳ
ସମରେ ହାରିଲେ ତାଙ୍କୁ କୃଷ୍ଣ କାମପାଳ ।
ଧୃତରାଷ୍ଟ୍ର ବୋଲେ ମୁହିଁ ଜାଣେ ତୋର ହିୟା
ସର୍ବେ ମରିବା ପାଣ୍ଡବେ ଜଗନ୍ନାଥ ଦୟା
ସୋଦର ଛାଡ଼ିଲେ ହରି ପାଣ୍ଡବ ନିମନ୍ତେ
ଯାଦବଙ୍କୁ ହରଇାଲେ ପାଣ୍ଡବଙ୍କ ହସ୍ତେ ।
ଯେବଣ ଶତ୍ରୁକୁ ଅବା ନ ପାରନ୍ତି ଜିଣି
ପଛେ ତାହାକୁ ନାଶନ୍ତି ଉପାୟରେ ପୁଣି ।
ସନ୍ନିଧିକୁ ଅଣାଇଣ ରଖାଇବ ତାଙ୍କୁ
ପଡ଼ା ବେନିଖଣ୍ଡ ମାତ୍ର ଦେବା ପାଣ୍ଡବଙ୍କୁ ।
ପଣ୍ଡିତର କାର୍ଯ୍ୟକର କୋପକର ତେଜ୍ୟା
ସେ ତ ସୋଦର ଏଥକୁ କିପାଁ କର ଲଜ୍ଜା ।
ବଦୟନ୍ତି ଗାଙ୍ଗେୟ ସେ ଶାନ୍ତନୁଙ୍କ ବହି
ଲାଭ ଅଲାଭ ଥରେ ବେନିକାର୍ଯ୍ୟ ଅଛି ।
ପରିମାଣି ବୁଝ ରାୟ ସୋଦରଙ୍କ କାର୍ଯ୍ୟ
ଯୁକତେ ପାଣ୍ଡବଙ୍କର ଅଛି ଅର୍ଦ୍ଧରାଜ୍ୟ ।
ନିରାଶ କରିବା ପାଇଁ ଯେତେ କରୁ ବୁଦ୍ଧି
କାହାକୁ ତୁ ଯାଚିଦେବୁ ଏଡ଼େକ ସମୃଦ୍ଧି ।
ନିରାଶ ହୋଇ ନ ଯାନ୍ତୁ ଯେହ୍ନେ ନାରାୟଣ
ସର୍ବେ ପ୍ରବୋଧି କହିବୁ ସଭାରେ ଥାଇଣ ।
ଯେବେ ପ୍ରବୋଧି ନ ହୋଇ ଯିବେ ନାରାୟଣ
ତେବେ ସୈନ୍ୟ ସଜ କରି କରିବାକୁ ରଣ ।
ଶୁଣି ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ମହାରଥା
ନିତାନ୍ତ କହିଲ ଯେବେ ରଖିବା ସେ କଥା ।
ଯାଅ ଯାଅ ତୁମ୍ଭେମାନେ ନିଜର ଆଶ୍ରମେ
କିପାଁ ନିରାଶ କରିବା ଶ୍ରୀପୁରୁଷୋତ୍ତମେ ।
କୁରୁପାଣ୍ଡବ ସମର ନୋହିବ ନିଶ୍ଚିନ୍ତ
ସକଳେ ବୋଇଲେ ତୃପ୍ତ ହେବେ ଜଗନ୍ନାଥ
ବାରୁଣାବନ୍ତ ରାଜ୍ୟଟି ଉତ୍ତର ଦିଗରେ
ଦୁଇଖଣ୍ଡ ପଡ଼ା ଦେବା ମେଖଳା କୂଳରେ ।

ଭୀଷ୍ମ ବୋଇଲେ ତୋହର ପ୍ରାଣ ସାଧୁ ସାଧୁ
କୋଟିପାଦ ନ ଛାଡ଼ିବେ ଲକ୍ଷ୍ମୀ ତୋର କନ୍ଧୁ
ସଂସାରକୁ ଉଦ୍ଧାରଇ ତୋର ବାକ୍ୟ ଗୋଟି
ଦୁଇକୁଳର ଅନ୍ଧଦ୍ୱ ଏବେ ଗଲା ଫିଟି ।
ସଂସାର କରତା ଆସିଅଛି ଦୂତପଣେ
ତାହାଙ୍କୁ ଜିଣିଲୁ ତୁହି ଅମୃତ ବଚନେ ।
ଅନେକ ସାନନ୍ଦ ହୋଇ ରହେ ଷଡ଼ଯୋଦ୍ଧୀ
ବୋଇଲେ ଗଲା ସମର ହୋଇଲାକ ସନ୍ଧି ।
ଛାଡ଼ିଗଲା ଉପଦ୍ରବ ସର୍ବେ ହେଲେ ଶାନ୍ତି
ଧର୍ମ ଉଦେହେଲା କୁରୁପାଣ୍ଡବରେ ପ୍ରୀତି ।
ଧର୍ମ ଉଦେହେଲା କୁଞ୍ଜଗଳ ଦେଶ ମାର୍ଗେ
ଦେବତା ରକ୍ଷା ପାଇଲେ ପାଣ୍ଡବଙ୍କ ଯୋଗେ
ସେହିଦିନ ହୋଇଅଛି ଅର୍ଦ୍ଧେକ ରଜନୀ
ରାଜାକୁ ଦର୍ଶନ କଲା ଯାଇଣ ଶକୁନି ।
ଦୁର୍ଯ୍ୟୋଧନ ଏକାନ୍ତରେ ଶକୁନିର ତୁଲେ
ବୋଇଲେ ଶ୍ରୀହରି ଦୂତପଣରେ ଅଇଲେ ।
ସଂସାର ତାରଣ କରି ହୋଇଲେ ମଧସ୍ଥ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାର ହୃଦଗତ ।
ବହୁତ ଲୋକ ବଚନ ନ ପାରିଲି ମେଣ୍ଟି
କୃଷ୍ଣର ବଚନେ ଦେବି ଗ୍ରାମ ବେନି ଗୋଟି ।
ଯାବତ ପ୍ରାଣୀଙ୍କୁ ମାମୁଁ ଜଗନ୍ନାଥ ମୂଳ
ତାହାଙ୍କ ତୃପତି ହେଲେ ଖଣ୍ଡେ ଅମଙ୍ଗଳ ।
ଶକୁନି ବୋଇଲା ତୁହି ସର୍ବଜନ ଦାତା
ସମସ୍ତଙ୍କ ଭାରାଭର ତୁହି ଯେ ହରନ୍ତା ।
ବାବୁ ଭୀଷ୍ମ ଦ୍ରୋଣ ଦୁହେଁ ଗୁରୁଙ୍କର ଗୁରୁ
ତାଙ୍କର ବଚନ ଭ୍ରଷ୍ଟ କରି ତ ନ ପାରୁ ।
ସେମାନେ ଅଟନ୍ତି ପୁଣି ମହାବଳବନ୍ତା
ତାଙ୍କର ବଚନ ଭ୍ରଷ୍ଟ କେ ଅଛି କରନ୍ତା ।
କର୍ଣ୍ଣ ଦୁଃଶାସନ ଶଲ୍ୟ ଆଚାର୍ଯ୍ୟ ଯେ କୃପ
ଏମାନେ ପ୍ରବେଶ ହେଲେ ରାଜାର ସମୀପ ।
ଶକୁନି ବୋଲେ ଯୋଗାଏ ଏ ସବୁ ମନକୁ
ଜଣେ କି ସମର୍ଥ ବହୁ ବାକ୍ୟ ମେଣ୍ଟିବାକୁ ।
ମୋ ବଚନ ବୁଝିଥାଅ ବାବୁ ଧାର୍ତ୍ତରାଷ୍ଟ୍ରି
ପାଣ୍ଡବେ ଦେବା ନ କର ପଡ଼ା ବେନିଗୋଟି ।
ଆବର ବୋଲେ ଶକୁନି ଶୁଣ ଦୁର୍ଯ୍ୟୋଧନ
ବଳୀକି ତ୍ରିପାଦ ଭୂମି ମାଗିଥିଲା ଦାନ ।
ବାମନକୁ ଉପହାସ କରି ଦେଲା ଦାନ
ମନ୍ତ୍ରୀର ବୋଲ ନ କଲା ଅସୁର ରାଜନ ।
ପାଦେକ ଘୋଟିଲା ସେହୁ ସସାଗରା ସୃଷ୍ଟି
ଆକାଶ ଘୋଟିଲା ତାର ଅନ୍ୟ ପାଦ ଗୋଟି

ଏତେକେ ମଧ ବ୍ରାହ୍ମଣ ସନ୍ତୋଷ ନୋହିଲା
ପୁଣି ପାଦେ କାଢ଼ି ତାକୁ ପାତାଳେ ଚାପିଲା ।
ବେନି ପଡ଼ା ଦେବା ଇଚ୍ଛା ଗୋବିନ୍ଦର ପ୍ରୀତେ
ଏକା ପଡ଼ାକେ ଘୋଟିବ ବ୍ରହ୍ମାଣ୍ଡ ସହିତେ ।
ସଭାରେ ଗ୍ରାମ ମାଗିବ ହରି ଯେତେବେଳେ
ସତ୍ୟବାକ୍ୟ ଜାଣିବ ହେ ମୋର ସେତେବେଳେ
ଆହେ ରାଜା ବିପତ୍ତିକି ଯେବେ ଅଛି ଇଚ୍ଛା
ପାଣ୍ଡବେ ଗ୍ରାମଦେବାକୁ ତେବେ କର ବାଞ୍ଛା ।
କୁଟୁମ୍ବ ରକ୍ଷା କରିବୁ ଯେବେ ତୁହି ହାଦେ
ପାଣ୍ଡବଙ୍କୁ ସୂଚୀମୁନେ ଭୂମି ତୁହି ନ ଦେ'।
ଶୂନ୍ୟରେ ରଣ କରନ୍ତି ସେହି ପାଞ୍ଚଭାଇ
ଗ୍ରାମଦେଲେ ତୋର ପ୍ରାଣ କେବେହେଁ ନ ରହି
ଦୁର୍ଯ୍ୟୋଧନ ବୋଲେ ହରି ନିରାଶ ହୋଇଲେ
ବର୍ତ୍ତି ନ ପାରିବାଟି ଯେ ସେହୁ କୋପ କଲେ ।
ଶକୁନି ବୋଇଲା କୃଷ୍ଣ ଅଟେ ସିନା ଏକା
କୋଟି ଯୋଦ୍ଧା ଅଛୁ ଆମ୍ଭେ ତାଙ୍କୁ କିପାଁଶଙ୍କା
ଅନ୍ୟାୟୀ ବ୍ରାହ୍ମଣ ଆଉ କପଟୀ ମଇତ୍ର
ଅତ୍ୟନ୍ତ ଲୋଭୀ ଭିକାରୀ ଲଘୁ ମଧପାତ୍ର ।
ଦୋଚାରୀ ଭାରିଯା ପୁଣି କଳଙ୍କିତ ସୁତ
କିଛି ଦୋଷ ନ ହୋଇବ ୟାଙ୍କୁ କଲେ ହତ ।
ମଧପାତ୍ର ପଣେ ହରି ଆସିଛି ଯୁକତେ
ତୃପତ ନୋହିବ ଆମ୍ଭେ ତାକୁ ଦେବା ଯେତେ ।
ବେନି ପଡ଼ାଏ ତୃପତ ହେଲେ ବାସୁଦେବ
ତେବେ ଉଭୟ କୂଳରେ ପ୍ରମାଦ ନୋହିବ ।
ତୃପତ ନୋହିଲେ ଆମ୍ଭେ ଏକ ହୋଇଥିବା
ସେହି ସଭାରେ କୃଷ୍ଣଙ୍କୁ ମାରି ପକାଇବା ।
ୟାକୁ ମାଇଲେ ପାଣ୍ଡବେ ହୋଇବେ ଅନାଥ
ଏହୁ ନାରଖାର ବୁଦ୍ଧି ଭିଆଏ ସମସ୍ତ ।
ଶକୁନି ମନ୍ତ୍ରୀର ମୁଖୁଁ ଏସନକ ଶୁଣି
ସାନନ୍ଦେ ନିଶରେ ହାତ ଦେଲା କୁରୁମଣି ।
ତୃତୀୟ ପ୍ରହର ଆସି ହୋଇଲା ରଜନୀ
ଛିଦ୍ର କହି ନିଜ ଗୃହେ ଚଳିଲା ଶକୁନି ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣାଦି ସହିତେ
ଆସ୍ଥାନରୁ ଉଠିଗଲେ ସର୍ବ ଅମନାତ୍ୟେ ।
ଶୟନ ମନ୍ଦିରେ ବିଜେ ମାନଚକ୍ରବର୍ତ୍ତୀ
ଅର୍ଘ୍ୟ ଘେନିଣ ଛାମୁରେ ମିଳେ ଭାନୁମତୀ ।
ବନ୍ଦାପନା କଲା ରାଣୀ ଯେମନ୍ତେ ବିଧାନ
ବିନୟରେ ମହାସତୀ ପୁଚ୍ଛିଲା ଏସନ ।
ଗୋବିନ୍ଦ ବିଜେ ଯୁଧିଷ୍ଠି ଦେବ ଆଜ୍ଞା ଘେନି
ତାଙ୍କ ସଙ୍ଗେ ରହିଛନ୍ତି ମହା ମହା ମୁନି ।
ମାରକଣ୍ଡ ବ୍ୟାସ ଛନ୍ତି ତାହାଙ୍କ ସହିତେ
କିସ କିସ କହିଲେ ସେ ତୁମ୍ଭର ଅଗ୍ରତେ ।
ଏକେ ସହୋଦର ପୁଣି ଅଟନ୍ତି ସେ ଜ୍ୟେଷ୍ଠ
ଶ୍ରୀମନ୍ତ ଧାର୍ମିକ ଆଉ ବିଶେଷ ବଳିଷ୍ଠ ।
ଗୋବିନ୍ଦ ମଧ୍ୟସ୍ଥ ଯେବେ ଆମ୍ଭ ପୂର୍ବଭାଗ୍ୟ
ଚାରିଯୁଗେ ଭାଇଙ୍କର ଅଛି ଜାଣ ଭାଗ ।
ପଞ୍ଚଗ୍ରାମ ମାଗୁଛନ୍ତି ଯଦି ଜଗନ୍ନାଥେ
ପଡ଼ା ତିନିଖଣ୍ଡି ଦେବା ତାଙ୍କ ପ୍ରୀତିଅର୍ଥେ ।
ଗୋବିନ୍ଦ ତୃପ୍ତ ହୋଇଲେ ପାଣ୍ଡବରେ ପ୍ରୀତି
ଏଥିପାଇଁ ଭକ୍ତିଭାବେ କରିବା ବିନତି ।
ଭକ୍ତବତ୍ସଳ ଅଟନ୍ତି ପ୍ରଭୁ ବାସୁଦେବ
ଗୋବିନ୍ଦ ତୃପ୍ତିରେ ଆମ୍ଭ ପାପ କ୍ଷୟ ଯିବ ।
ଦୁର୍ଯ୍ୟୋଧନ ବୋଲେ ତୁ ଗୋ ଶୁଣ ଭାନୁମତୀ
ଭୀଷ୍ମ ଦ୍ରୋଣାଦି ସମସ୍ତେ କହିଲେ ଏମିତି ।
ମୁହିଁ ହୃଦଗତେ ମଧ ବିଚାରିଲି ଏହା
ମାମୁଁର ବିଚାରରୁ ତ ନ ଅଇଲା ତାହା ।
ବୋଇଲା ସେ ଗ୍ରାମ ଦେଲେ ପ୍ରମାଦ ପଡ଼ିବ
ଗ୍ରାମ ଥାଇ ସୂଚୀମୁନେ ଭୂମିହିଁ ନ ଦେବ ।
ଭାନୁମତୀ ବୋଲେ ସ୍ୱାମୀ ବହୁଜନ ମତ
ଜଣକ ବୋଲେ ପଡ଼ିଲେ ହୁଅଇ ଅନର୍ଥ ।
ସାବଧାନେ ଶୁଣ କହେ ପୂର୍ବର ଚରିତ
ଷଟକର୍ମ ପୁରାଣରେ ଯା ଅଛି ଲିଖିତ ।
ତୁଙ୍ଗଭଦ୍ରା କୂଳେ ଜ୍ଞାନପୁରେକ ନଗରେ
ମଲେ ପ୍ରାଣୀ ମୁକତ ନ ହୁଅନ୍ତି ସେଠାରେ ।
ଯେତେ ଲୋକ ସେ ସ୍ଥାନରେ ହୋନ୍ତି ପ୍ରାଣେହତ
ସ୍ୱର୍ଗେ ପଶି ନ ପାରନ୍ତି ହୁଅନ୍ତି ସେ ପ୍ରେତ ।
ଏମନ୍ତେ ବହୁତ ପ୍ରେତ ନଦୀକୂଳେ ରୁଣ୍ଡ
ସେମାନେ ଅତୀବ ଦୁଷ୍ଟ ମହା ପରଚଣ୍ଡ ।
ପଶ୍ଚିମରାଷ୍ଟ୍ର ନିବାସୀ ଶୂଦ୍ରକ ରାଉଳ
ସେ ଯାଇ ପ୍ରବେଶ ହେଲା ତୁଙ୍ଗଭଦ୍ରା କୂଳ ।
ବଡ଼ ପରିମଳ ଅଟେ ଦେଖିଲା ସେ ଗ୍ରାମ
ତେଣୁକରି ସେ ନଗ୍ରରେ କଲାକ ବିଶ୍ରାମ ।
ଗୁଣବନ୍ତ ଦେଖି ସର୍ବେ ତାକୁ କଲେ ପୂଜା
ଗୋଟିଏ ଆତ୍ମଜ ତାର ଗୋଟିଏ ଭାରିଯା ।
ଏକଦିନେ ସେ ଶୂଦ୍ରକ ଗ୍ରାମ ବୁଲିଗଲା
ଧବଳ ପର୍ବତ ତଳେ ସ୍ଥାନେକ ଦେଖିଲା ।
ଦେଖିଣ ରାଉଳ ତହୁଁ ବିଚାରିଲା ମତି
ଗ୍ରାମବାସୀଙ୍କୁ ମାଗିଣ କରିବି ମୁଁ ବୃତ୍ତି ।
ମହାବଳବନ୍ତ ପୁଣି ନିରୋଳ ଏ ବୃତ୍ତି
ମାଘତିଳ ଖଣ୍ଡିଏ ଯେ ବୁଣିବି ମୁଁ ଏଥି ।

ଏହା ବିଚାରି ରାଉଳ ଗ୍ରାମକୁ ଅଇଲା
ସେ ଦେଶ ମହାଜନଙ୍କୁ ଯାଇଁଣ ଭେଟିଲା ।
ସେ ଗ୍ରାମ ଲୋକମାନଙ୍କୁ ମାଗିଲା ସେ ଭୂମି
ତିଳ ଖଣ୍ଡିଏ କରିବି ଦିଅ ମୋତେ ସ୍ୱାମୀ ।
ନିର୍ମଳ ଭୂମି ଖଣ୍ଡିଏ ଦେଖିଲଇଁ ମୁହିଁ
ଧବଳ ପର୍ବତ ତଳେ ଚାଷ କରିବଇଁ ।
ଗ୍ରାମର ଲୋକେ ବୋଇଲେ ତହିଁ ଭୂତମେଳି
ଦୁର୍ଦ୍ଧର୍ଷ ପ୍ରେତ ସଙ୍ଗେ କେ ହେବ ବାରୁଆଳି ।
ରାଉଳ ବୋଇଲା ମହାଜାଲ ମୁଁ ପାତିଲେ
ଏକଘାନ୍ତିକରେ ବାନ୍ଧି ପାରିବି ମୁଁ ଭଲେ ।
ଏହିରୂପେ ବୋଲି ସେହୁ ଶୂଦ୍ରକ ରାଉଳ
ଚାଷ ଚଷିବାକୁ ଗଲା କରି ଅନୁକୂଳ ।
ଲଙ୍ଗଳ ଚାରିଗୋଟିକୁ ଯୋଚାଇ ଘେନିଲା
କୃଷିକାରୀଙ୍କୁ ଲଗାଇ ବାହୁଡ଼ି ଅଇଲା ।
ଶୁଣ ନାଥ ସବୁ ପ୍ରେତ ଏକମେଳ ହେଲେ
କୃଷିକାରୀ ଲୋକଙ୍କୁ ସେ ଯାଇଣ ଲାଗିଲେ ।
ହଳଛାଡ଼ି ସର୍ବେ କେଶ ବାସ ଅସମ୍ଭାଳେ
ଭୂତ ପରାୟେ ନାଚିଲେ ଅତି କୁତୂହଳେ ।
ବଳଦ ପଳାଇ ଗଲେ ଜୁଆଳିକି ଭାଙ୍ଗି
ଡିଅନ୍ତି କୃଷାଣମାନ ପାଇ ଭୂତସଙ୍ଗୀ ।
ଅନ୍ନ ଘେନିଣ ରାଉଳ ପ୍ରବେଶିଲା ବେଗି
ଦେଖେ ବଳଦ ପଳାନ୍ତି ଲଙ୍ଗଳକୁ ଭାଙ୍ଗି ।
କୃଷାଣମାନେ ଡିଅନ୍ତି ଦେଇ ଗଳଗାଜି
ରାଉଳ ବୋଲେ ଭାଙ୍ଗିବି ପ୍ରେତ ଟାଣ ଆଜି ।
ଏତେ ବୋଲି ମହାଜାଲ ପାତିଲା ବହନ
ସମସ୍ତ ପ୍ରେତମାନଙ୍କୁ କଲା ସେ ବନ୍ଧନ ।
ବିକଳେ ଲୋଟନ୍ତି ଭୂତ ରାଉଳର ପାଏ
ବୋଲନ୍ତି ଏତେ କାଳରେ ପଡ଼େ ଅପଚୟେ ।
ମହାରାଉଳ ବୋଇଲା କିଳିବି ତୁମ୍ଭଙ୍କୁ
ଷାଠିଏ ପଉଟି ତିଳ ନ ଦେଲେ ଆମ୍ଭଙ୍କୁ ।
ବନ୍ଧନ ଡରେ ସମସ୍ତେ ସନମତ କଲେ
ଅଇଣ୍ଠା ଚଣ୍ଡକୁ ଲଗା କରି ପଳାଇଲେ ।
ବାହୁଡ଼ି ମହାରାଉଳ ନିଜ ଗୃହେ ଗଲା
କୃଷିକାରୀ ଲୋକଙ୍କୁ ସେ ଯାଇ ପ୍ରବୋଧିଲା
ବାବନାଭୂତ ବୋଲିଣ ଭୂତଙ୍କର ରାଜା
ପ୍ରତାପୀ ସେ ସର୍ବଭୂତ କରନ୍ତି ତା ପୂଜା ।
ସେହୁ ନଥିଲା ପାରୁଶେ ହୋଇଲାକ ଆସି
ବୋଇଲା ମୋ କ୍ରୀଡ଼ାଭୂମି କିଏ ଅଛି ଚଷି ।
ଭୂତେ ବୋଇଲେ ଗୋସାଇଁ ଏକଇ ରାଉଳ
ସେହୁ ଚାଷ ଚଷୁଅଛି ବୁଣାଇବ ତିଳ ।
ଆମ୍ଭେ ବିରୋଧିଲୁ ତାର କୃଷକମାନଙ୍କୁ
ମହାଜାଲ ପାତି ସେହୁ ଧଇଲା ଆମ୍ଭଙ୍କୁ ।
ଷାଠିଏ ପଉଟି ତିଳ ଦେବା ସ୍ଥିର କଲୁ
ଅଇଣ୍ଠା ଚଣ୍ଡକୁ ଲଗା କରିଣ ଆସିଲୁ ।
କ୍ଷଣେହେଁ ସେ ନ ଛାଡ଼ିଣ ମାରଇ ନିରତ
ତା ଶୁଣି ବାବନାଭୂତ ହେଲା କୋପାନ୍ୱିତ ।
ମୂହୁର୍ତ୍ତିକେ ବସି ତହୁଁ ଚିନ୍ତାନ୍ୱିତ ହେଲା
ବୋଲେ ଦଣ୍ଡେ ନଥିବାରୁ ଏତେକୃତ୍ୟ କଲା ।
ମୁହିଁ ତୁମ୍ଭର ଠାକୁର ଅଟେ ମହାପ୍ରଭୁ
ଷାଠିଏ ପଉଟି ତିଳ କାହୁଁ ଆଣିଦେବୁ ।
ଏବେ ଯେ ତୁମ୍ଭେ ସମସ୍ତେ ଆସ ମୋରତୁଲେ
ସେ ରାଉଳ ଦେହମାଂସ ଭକ୍ଷିବା ହୋ ଭଲେ
ଭୂତେ ସକଳେ ବୋଇଲେ ମାଂସେ ନାହିଁ କାର୍ଯ୍ୟ
ଆଗେ ତିଳ ଛଡ଼ାଇଣ ଆସ ଭୂତରାଜ ।
ପ୍ରଚଣ୍ଡ ରୂପକୁ ଧରି ବୋଲେ ଭୂତରାଜ
ନଗ୍ରଜନଙ୍କୁ ଧୂମାନ୍ତ କରିବି ମୁଁ ଆଜ ।
ଚଳିଲା ବାବନାଭୂତ ହୋଇ କୋପାନଳ
ପ୍ରବେଶିଲା ଯହିଁ ଗୃହ କରିଛି ରାଉଳ ।
ଶୁଣ ରାଜନ ବାବନା ଭୂତ ଗଲା ବେଗେ
ସେ ମହାରାଉଳ ପୁତ୍ର ଅଙ୍ଗେ ଯାଇ ଲାଗେ ।
ସେ ପୁତ୍ରର ଚେଷ୍ଟା ଦେଖି ରାଉଳ ଜାଣିଲା
ମହାଜାଲ ପାତି ଭୂତରାଜକୁ ଧଇଲା ।
ଲୁହାକଣ୍ଟାରେ ରାଉଳ କିଳିବାକୁ ଗଲା
କ୍ଷମାକର ମୋତେ ବୋଲି ବାବନା ବୋଇଲା
ରାଉଳ ବୋଇଲା ଯେବେ ଛାଡ଼ିବି ମୁଁ ତୋତେ
ତିନିଷଠି ପୌଟି ତିଳ ଦେବୁଟିକି ମୋତେ ।
ବାବନା ଭୂତ ବୋଇଲା ସର୍ବେ ଯାହାକଲେ
ଅପଖ୍ୟାତି ପାଇବି ନା ମୁହିଁ ଛଡ଼ାଇଲେ ।
ପାଣିରେ ଧୋଇଦେବି ମୁଁ ତା ଚୋପା ଛଡ଼ାଇ
ଶଙ୍ଖବର୍ଣ୍ଣ ପ୍ରାୟ କରିଦେବି ମୁଁ ଗୋସାଇଁ ।
ଶୁଣି ସେ ମହାରାଉଳ ମନରେ ହସଇ
ଅଇଣ୍ଠା ଚଣ୍ଡକୁ ଲଗା କରିଣ ଆସଇ ।
ଏହି ପରକାରେ ସେହି ନିଷ୍ଠୟତା କରି
ତିଳ ଦେଲା ତ୍ରିବିଧିରେ କହିଲା ଯେପରି ।
ଏହିପରି ଭାନୁମତୀ ରାଜାକୁ କହିଲା
ବହୁଜନ କଥା ମେଣ୍ଟି ଏମନ୍ତ ହୋଇଲା ।
ଯେହୁ ବହୁଜନ ତେଜେ ନିଜମତ ଘେନି
କାଳେ ବାବନା ପରାୟେ ହୋଇବ ଶକୁନି ।
ଦୁର୍ଯ୍ୟୋଧନ ବୋଇଲା ଗୋ ଶୁଣ ଭାନୁମତୀ
ଜନ୍ମେ ଜନ୍ମେ ହୋଇଥାଉ ଶକୁନି ମୋ ମନ୍ତ୍ରୀ ।

ପଞ୍ଚରାଜ୍ୟ ପାଇଲି ମୁଁ ମାମୁଁର ପ୍ରସାଦେ
ଅନେକ ଶତ୍ରୁ ଜିଣିଲି ମୁହିଁ ଅପ୍ରମାଦେ ।
ଭୀମେ ବିଷଲଡୁ ଦେଲି ମାତୁଳ ବୁଦ୍ଧିରେ
ପଶା ଖେଳାଇ ଲଭିଲି ରାଜ୍ୟ ଅକ୍ଳେଶରେ ।
ବାରୁଣାରେ ଜତୁଗୃହ ଭିଆଇଲା କୂଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।
ମୋର ଶତ୍ରୁ ଜିଣିବାକୁ ତାର ଏଡ଼େ ମନ
ପ୍ରାଣ ଥିବାଯାଏ ତାକୁ ନ କରିବି ଭିନ୍ନ ।
ଭାନୁମତୀ ବୋଲେ ସ୍ୱାମୀ ମୃତ୍ୟୁକାଳେ ପ୍ରାଣୀ
ମାରକ ପଦାର୍ଥ ସବୁ ସୁଧାପ୍ରାୟ ମଣି ।
କୂଟେ ପାଷାଣ ଗୃହରେ ତା ବଂଶକୁ ଭରି
ଯେଉଁ ପରକାରେ ତୁମ୍ଭେ ତାଙ୍କୁ ଅଛ ମାରି ।
ଏଡ଼େ କୂଟ କପଟରେ ଲଭିଅଛି ସିଦ୍ଧି
ତୁମ୍ଭ ବଂଶ ମରାଇବ କରିଛି ଏ ବୁଦ୍ଧି ।
ସ୍ୱାମୀ ସୋଦର ସଂଗ୍ରାମ ନ ଯୋଗାଏ ମୋତେ
ରାଜ୍ୟ ଅର୍ଦ୍ଧଭାଗ ତାଙ୍କୁ ଯୋଗାଏ ଯୁକତେ ।
ଯୁକତେ ତୁମେ ସୋଦର କୃଷ୍ଣ ସାହା ତାଙ୍କୁ
କେମନ୍ତେ ରଣେ ଜିଣିବ ପାଣ୍ଡବମାନଙ୍କୁ ।
ତାଙ୍କର ବଳ ବୁଝିଛି ମୁହିଁ ହେତୁକରି
କୌଣସି କାଳେ ତାହାଙ୍କୁ ନ ହୋଇବ ସରି ।
ହେ ରାଜନ ବିଷଲଡୁ ଭୀମ ପାରକଲା
ନାଗବଳ ଗଞ୍ଜି ବହୁବିଦ୍ୟା ସେ ପାଇଲା ।
ଜତୁଗୃହରୁ ଉବୁରି କୁମ୍ଭୀରକୁ ମାରି
ମଧୁବନରେ ସଂହାର କରିଲେ କିନ୍ନରୀ ।
ହିଡ଼ିମ୍ବକ ବନେ ପଶି ହିଡ଼ିମ୍ବାକୁ ନାଶି
ଏକଚକ୍ରରେ ବକାକୁ ପକାଇଲେ ଧ୍ୱଂସି ।
ଅଙ୍ଗାରପନ୍ନଗକୁ ଯେ ଜିଣି ଫାଲ୍‌ଗୁନୀ
ପାଞ୍ଚାଳେ ପ୍ରବେଶ ହେଲେ ଦ୍ୱିଜରୂପ ଘେନି ।
ଲକ୍ଷେକ ରାଜା ସେଠାରେ ହୋଇଥିଲେ ମେଳି
ମହା ଲାଖ ବିନ୍ଧି ପାର୍ଥ ଲଭିଲା ପାଞ୍ଚାଳୀ ।
ବହୁନୃପ ଘେନି ତୁମ୍ଭେ କରିଲ ସମର
ଲଜ୍ଜା ପାଇଲ ସୈନ୍ୟ ଯେ ଗଲେ ଯମଘର ।
ସ୍ୱାମୀ ହେ ଇନ୍ଦ୍ର ହୋଇଲେ ଅର୍ଜ୍ଜୁନ ବିବାଦୀ
ଖାଣ୍ଡବ ଦହି ଅଗ୍ନିର ନାଶକଲା ବ୍ୟାଧି ।
ନିର୍ବାତକବଚ ମାରି ସ୍ୱର୍ଗ କଲା ରକ୍ଷା
ଇନ୍ଦ୍ରଦେବର ପୂରାଏ ସେହୁ ମନୋବାଞ୍ଛା ।
ହନୁ ଅର୍ଜ୍ଜୁନ ସମୟେ ହୋଇଲେ ବିବାଦୀ
ଶରେ ଶର ସଂଯୋଗରେ ବାନ୍ଧେ ବାରାନିଧି
ଘୋଷଯାତ୍ରାକାଳେ ଚିତ୍ରସେନ ନେଲା ଧରି
ତହୁଁ ପାର୍ଥ ଆଣିଲାକ ତୁମ୍ଭଙ୍କୁ ଉଦ୍ଧାରି ।
ପାଣ୍ଡବାସୁର ତୁମ୍ଭଙ୍କୁ ଗିଳିବାର ବେଳେ
ତାଙ୍କୁ ମାରି ଉଦ୍ଧାରିଲା ତୁମ୍ଭଙ୍କୁ ସେ ହେଳେ ।
ଗୋଧନ ହରଣକାଳେ ଜାଣ ସବୁକଥା
କିଏ ବା ନ ଥିଲେ ତହିଁ ତୁମ୍ଭ ମହାରଥା ।
ଅଲଙ୍ଘିତକର୍ମ କଲେ ରକ୍ଷା ଜଗତ୍‌ଶ୍ରେଷ୍ଠୀ
ଚିରନ୍ତନ କଥା ତହୁଁ ରଖିଲେ କିରୀଟି ।
ସ୍ୱାମୀ କଲା ଉପକାର ନ ମାନେ ଯେ ଜନ
ଅସ୍ୱାର୍ଥ ଜୀବନ ତାର ନରକେ ପତନ ।
ଦୁର୍ବୁଦ୍ଧି କଥା କହନ୍ତି କର୍ଣ୍ଣ ଦୁଃଶା ମଲ୍ଲ
ଯାଙ୍କ ବୁଦ୍ଧି କଲେ କାଳେ କାର ନୁହେଁ ଭଲ ।
ଭାନୁମତୀ ବୋଲେ ସ୍ୱାମୀ ଶୁଣ ମୋ ବଚନ
ଯେତେ କଥା କହେ କିପାଁ ହୋଇଲ ମଉନ ।
ସମସ୍ୟା ନ କଲେ ସ୍ୱାମୀ ମୋର ବଚନକୁ
ସଂଗ୍ରାମ କଲେ କି ଯଶ ହୋଇବ ତୁମ୍ଭଙ୍କୁ ।
ଭାନୁମତୀ କହୁଁ କହୁଁ ପ୍ରହରେ ରଜନୀ
ସ୍ନାନ ମନ୍ଦିରେ ବିଜୟ କଲା କୁରୁମଣି ।
ନିତ୍ୟକର୍ମ ସାରି କଲା ଦେବପିତୃ ପୂଜା
ଭୋଜନାଦି ଶେଷକରି ତହୁଁ କୁରୁରାଜା ।
ସଭା ମଣ୍ଡପରେ ଯାଇ ବିଜୟ ତକ୍ଷଣ
ସକଳ ଅମାତ୍ୟ ଆସି କଲେ ଦରଶନ ।
ବିଜୟ ସମ୍ଭର୍ବ ଆସ୍ଥାନେ ମାନଚକ୍ରବର୍ତ୍ତୀ
ପାରିଦଣ୍ଡମାନେ ଯେଝା ଆସ୍ଥାନେ ବସନ୍ତି ।
ତଳେ ପଟୁଆରୀ ଛନ୍ତି ସହସ୍ର ସଇନ
ଖୁଣ୍ଟିଆ ଡାକଇ ନୃପ ହୁଅ ସାବଧାନ ।
ଜୟ ତୁ ଧର୍ମଦେବତା କାର୍ଯ୍ୟ କରୁ ସିଦ୍ଧି
ଜୟ ତୁ ଧର୍ମଦେବତା ସାତ୍ତ୍ୱିକ ପବୋଧି ।
ନିରଞ୍ଜନ ନିର୍ମଳ ତୁ ଅଟୁ ନିରାକାର
ଧର୍ମର ପୁରୁଷ ତୁହି ଧର୍ମେ କରୁ ପାର ।
ଅହିଂସା ଅମାୟା ତୋର ଅଲଭେ ଅଚିନ୍ତା
ଦୁଃଖୀ ତାରଣ ଅଗତି ତୁହି ଗତି ଦାତା ।
ନମାମି ଶ୍ରୀନାରାୟଣ ଚରଣ ସରୋଜ
ଯୋଗୀଜନ ଚିନ୍ତାମଣି ହୃଦୟରେ ଭଜ ।
ଅନାଥ ତାରଣ ନାଥ ଅଟୁ ଦେବସ୍ୱାମୀ
ଶୟଳ ତାରିବାପାଇଁ ଜାତ ଅନ୍ତର୍ଯ୍ୟାମୀ ।
ଭାବଗ୍ରାହୀ ନାଥ ତୁହି ଭକତବତ୍ସଳ
ତିନି ଭୁବନଯାକକୁ ରଖନ୍ତା କେବଳ ।
ଅନୁବ୍ରତେ ଚିନ୍ତାମଣି ପରଦୁଃଖେ ଦୁଃଖୀ
କିଞ୍ଚିତେ ଭକତେ ମହାସଙ୍କଟରୁ ରଖି ।
ଯାବତ କର୍ମେ ଧରିବା ତୋର ନାମଗୋଟି
ଯାର ଦର୍ଶନରେ ଜନ୍ମ ଅନ୍ଧ ଯାଏ ଫିଟି ।

ଶକୁନି ବଚନ ଶୁଣି ବୋଲେ ଧର୍ମରାୟେ
ମୁହିଁ ବନବାସେ ଗଲି ହିମବନ୍ତ ଯାଏ ।
ମୋହର ଅଜଣା ନାହିଁ କଉଣସି ତୀର୍ଥ
ଏବେ ମାମୁଁ ଦେଖିବି ମୁଁ କିଛି କ୍ଷତ୍ରିବୃତ୍ତ ।
କେଡ଼େ ଶକତି ଅଟଇ ଧୃତରାଷ୍ଟ୍ର ବାଳ
ତାହାକୁ ଦେଖିବି ମାମୁଁ ଏଥର କେବଳ ।
ତୁ ପଣ୍ଡିତ ମହାମନ୍ତ୍ରୀ କହ ତୋର ବୁଦ୍ଧି
ଆଉ କଦାଚ ନୋହିବ ଜାଣିଥାଅ ସନ୍ଧି ।
ତୋର ହିତପଣ ମାମୁଁ ଜାଣିବା ନା ଭଲେ
ସମୟେ କୌରବେ ଯାନ୍ତୁ ବନବାସ ଭଲେ ।
ଆମ୍ଭେ ସମୟେକ ପାଞ୍ଚରାଜ୍ୟେ ହେଉ ରାଜା
ଏହି କଥା ଭଲରୂପେ ସ୍ଥିରକରି ଯା ଯା ।
କଥା କହୁଁ କହୁଁ ରବି ଅସ୍ତାଚଳେ ଗଲେ
ବାସୁଦେବ ସହଦେବ ଶକୁନି ମିଳିଲେ ।
ଶକୁନି ବୋଇଲା ଦେବ ଶୁଣ ଜଗନ୍ନାଥ
କୁରୁପାଣ୍ଡବଙ୍କ ସନ୍ଧି ହୋଇବ କେମନ୍ତ ।
କୃଷ୍ଣ ବୋଇଲେ କେମନ୍ତ ତୁ ବିଚାର କରୁ
ସନ୍ଧି ବିସନ୍ଧି ସକଳ ସବୁ କରିପାରୁ ।
ଶକୁନି ବୋଇଲା ହରି ତୋହର ପ୍ରସାଦେ
କୁରୁ ପାଣ୍ଡବଙ୍କୁ ଏକ କରିପାରେ ହାଦେ ।
ତୁହି ଯେଉଁରୂପେ ଆଜ୍ଞା ଦେବୁ ବାସୁଦେବ
ତୋହର ଆଜ୍ଞା ପ୍ରମାଣେ ବର୍ତ୍ତୁ ଆମ୍ଭେ ସର୍ବ ।
ଭାରାଭର ନିବାରଣ କରିବା ନିମନ୍ତେ
ଭୀମ ଅରଜୁନ ଆଦି ଜନ୍ମ ଏତଦର୍ଥେ ।
ପଞ୍ଚଭ୍ରାତା ସହ ମୁହିଁ ଅଟେ ଏକଆତ୍ମା
ଯୁଧିଷ୍ଠିର ଦେବ ତହିଁ ପରମ ମହାତ୍ମା ।
ହରି ଅଭୟ ବୈକୁଣ୍ଠ ଅଟୁ ଦେବରାୟ
ଦ୍ୱାରପାଳ ମୁହିଁ ଭୀମ ମନ୍ତ୍ରୀ ଧନଞ୍ଜୟ ।
ନୀଳେନ୍ଦ୍ରୀବର ନୟନ ତୋ ଆଜ୍ଞା ପ୍ରମାଣେ
ମହୀଭାରା ଉଶ୍ୱାସିବା ଆମ୍ଭେ ଷଡ଼ଜଣେ ।
ଅଥବା ଭାରା ଉଶ୍ୱାସେ ନାହିଁ ଯେବେ ମତି
ଆଜ୍ଞା ଦିଅ ଦୁଇକୁଳେ କରାଇବି ପ୍ରୀତି ।
ମୁହିଁ ସହଦେବ ଆଉ ବାସୁଦେବ ଘେନି
ପାଣ୍ଡବଙ୍କ ହିତେ ଆମ୍ଭେ ବର୍ତ୍ତିଥାଇଁ ତିନି ।
ଗୋବିନ୍ଦ ବୋଇଲେ ଭାରା ନିବାରଣ ହେଉ
ଏ ସକଳ ଥିଲେ କଳିଭୋଗ ହେବ କାହୁଁ ।
ଶକୁନି ବୋଇଲା ହରି ହୁଅ ଅଗ୍ରସର
ସଂଗ୍ରାମ ଭୂମିକୁ ଏବେ ଅନୁକୂଳ କର ।
ସଂଶୟ ଫିଟାଇ ହରି କହୁଅଛି ତୋତେ
ପାଣ୍ଡବେ ପୂର୍ବଦିଗକୁ ଯାଆନ୍ତି ଯେମନ୍ତେ ।

ଭୀଷ୍ମ ବିରୁଦ୍ଧେ ଶିଖଣ୍ଡୀ କର ସେନାପତି
ଦ୍ରୋଣପାଇଁ ଧୃଷ୍ଟଦ୍ୟୁମ୍ନ ନିଶ୍ଚିନ୍ତ ଅଛନ୍ତି ।
କର୍ଣ୍ଣ ପାଇଁକି ଅଛନ୍ତି ବୀର ଧନଞ୍ଜୟ
ଯୁଧିଷ୍ଠିର ହାତେ ଶଲ୍ୟ ନିଶ୍ଚେ ହେବ କ୍ଷୟ ।
ଦୁର୍ଯ୍ୟୋଧନ ଶତଭାଇ ପାଇଁ ଅଛି ଭୀମା
ଭୂରିଶ୍ରବାକୁ ଅଛନ୍ତି ସାତ୍ୟକି ମହାତ୍ମା ।
କୌରବଙ୍କ ମୃତ୍ୟୁତତ୍ତ୍ୱ କହେ ମନ୍ତ୍ରୀବର
ତାହାଙ୍କୁ ବିଧ୍ୱଂସ କରି ପୃଥ୍ୱୀଭାରା ହର ।
ଆହେ ହରି ସହଦେବ ମୋତେ ବିନାଶିବ
ଏମନ୍ତ କଥା ପୂର୍ବରୁ ଲିହିଛି ଦଇବ ।
ଗୋବିନ୍ଦ ବୋଇଲେ ମନ୍ତ୍ରୀ ଥିବୁ ନା ସମୟେ
ଆମ୍ଭର ତୁଲେ ପଛକେ ଯିବୁ ସ୍ୱର୍ଗ ଯାଏ ।
ମନ୍ତ୍ରୀ ବୋଲେ ଦୁର୍ଯ୍ୟୋଧନ ଯେଉଁ ମହାରାଜା
ଗାନ୍ଧାରୀ ନନ୍ଦନ ସେହି ମୋହର ଭଣଜା ।
ମୋ ବଂଶଯାକ ପାଷାଣ ଗୃହ ମଧ୍ୟେ ଭରି
ଅଦୋଷେ ବଂଶ ମୋହର ପକାଇଲା ମାରି ।
ମୁଁ ପୁତ୍ର ପିତୃଲୋକଙ୍କୁ କାରଣ କରିବି
ଭଗ୍ନୀପୁତ୍ର ଭଣଜାର ବଂଶ ମରାଇବି ।
ମୋର ବଂଶ ମରାଇଛି ରାଜା ଦୁର୍ଯ୍ୟୋଧନ
କାହାର ବଳେ ସେ କଥା ନ ହୋଇଲା ଆନ ।
ମାମୁଁ ଯୋଗେ ଭଣଜାକୁ ପଡ଼ିଲେ ପ୍ରମାଦ
ଏ ଦୋଷ ସମ ଗୋ ଦ୍ୱିଜ କଲେ ଶିରଚ୍ଛେଦ ।
ଶତଗୋଟି ଭଣଜାକୁ ମରାଇବି ମୁହିଁ
ଶତ ଗୋହତ୍ୟାର ଦୋଷ ନିଶ୍ଚେ ପାଇବଇଁ ।
ଅପାର ଦୋଷ ଯଦ୍ୟପି ହୋଇବ ହେ ମୋତେ
ଅଛି କାରଣ ପାଇବି ପାଣ୍ଡବଙ୍କ ହିତେ ।
ହରି ତୋର ମୁଖ ଚାହିଁ ସମରେ ପଡ଼ିଲେ
ନାନା ପାତକ ଖଣ୍ଡିବି ରଣ ଯୋଗ କଲେ ।
ପ୍ରକୃତ କଥାକୁ ଯହୁଁ କହିଲା ଶକୁନି
ଶୁଣି ସନ୍ତୁଷ୍ଟ ହୋଇଲେ ଦେବ ଚକ୍ରପାଣି ।
ଚଳିଲା ଶକୁନି ମନ୍ତ୍ରୀ ଆପଣା ଆଳୟେ
ପରେ ଯେଉଁ କଥା ହେଲା ଶୁଣ ମନୁରାୟେ ।
ବାସୁଦେବ ସହଦେବ ଏକତ୍ର ବସିଣ
କଳିକାଳ ପୁରୁଷକୁ କଲେ ସୁମରଣ ।
ସେ ବେନି ଶ୍ରୀକୃଷ୍ଣ ପାଦେ ହୋଇ ପରଣାମି
ବୋଇଲେ କିପାଁ ସ୍ମରଣ କଲ ଦେବସ୍ୱାମୀ ।
କୃଷ୍ଣ ବୋଇଲେ ଦ୍ୱାପରଯୁଗ ଶେଷ ହେଲା
କଳିଯୁଗ ବର୍ତ୍ତମାନ ଆସି ପ୍ରବେଶିଲା ।
କୁରୁ ପାଣ୍ଡବ ଥାଆନ୍ତେ ତୋତେ ଭୋଗ କାହିଁ
ଏମାନେ ନାଶ ହୋଇଲେ ରାଜା ହେବୁ ତୁହି ।

କାଲି କୁରୁକ୍ଷେତ୍ର ଦୁଇ ଭାଗ ଯେ ହୋଇବ
ବିଦୁର ମଧ୍ୟସ୍ଥ ହୋଇ ଗୁଳା ତହିଁ ଦେବ ।
ତୁମ୍ଭେ ଦୁହେଁ ଦୁଇଖଣ୍ଡ ସ୍ୱର୍ଣ୍ଣକାଠି ହୋଇ
ପଡ଼ିଥିବ କୁରୁକ୍ଷେତ୍ର ମଧ୍ୟସ୍ଥଳ ଭୂଇଁ ।
ଯୁଧିଷ୍ଠିର ଦେବ ଯେଉଁ ଖଣ୍ଡିକ ଘେନିବ
ଯତନେ ପୂର୍ବଭାଗର ଈଶାନେ ପଡ଼ିବ ।
ପଶ୍ଚିମ ଭାଗେ ପଡ଼ିବ ଦୁର୍ଯ୍ୟୋଧନ କାଠି
ତେବେ ମୀମାଂସା ହୋଇବ ବିଭାଗ ଅରିଷ୍ଟି ।
ଆଜ୍ଞା ପାଇବା ମାତ୍ରକେ କଳିକାଳ ବେନି
କୁରୁକ୍ଷେତ୍ରରେ ପଡ଼ିଲେ ବେନିକୂଳ ଘେନି ।
ମାର୍ଗଶୀର ତ୍ରୟୋଦଶୀ ବୁଧବାର ଦିନ
ରୋହିଣୀ ନକ୍ଷତ୍ର ଭୋଗ ଅଟେ ବିଦ୍ୟମାନ ।
ବାଳବ ନାମେ କରଣ ଅତିଗଣ୍ଡ ଯୋଗ
ବିଛା ମାସ ସଂକ୍ରାନ୍ତିକୁ ଷୋଳଦିନ ଭୋଗ ।
ସେହି ରାତ୍ର ପାଞ୍ଚଘଡ଼ି ଥାଉଁ କଉରବେ
ସୈନ୍ୟ ଘେନିଣ ମିଳିଲେ ବଡ଼ାଇ ସମ୍ଭର୍ବେ ।
ରାଜାର ପୁନର୍ବସୁ ଯେ ମିଥୁନର ରାଶି
ରୋହିଣୀ ନକ୍ଷତ୍ର ତାର ବିପରୀତେ ବସି ।
ପୁଷ୍ୟାକୁ ରୋହିଣୀ ପୁଣି ଅଟଇ ଯେ ତାର
ଯୁଧିଷ୍ଠିଙ୍କୁ ଶୁଭତାର ଯୋଗ ସେ ଦିନର ।
ମାନଗୋବିନ୍ଦର ତୁଲେ ସାତପଦ୍ମ ରଥୀ
ଦୁଇ ସାଗର ମୁକୁଟବନ୍ଧା ସେନାପତି ।
ଭୀଷ୍ମଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ସୋମଦତ୍ତ
ଏ ଷଡ଼ରଥୀଙ୍କ ତୁଲେ ତ୍ରିଂଶପଦ୍ମ ରଥ ।
ଲକ୍ଷେ ପାଟଛତ୍ର ବେନିଲକ୍ଷ ଯେ ଉଦଣ୍ଡ
ତ୍ରିଲକ୍ଷ ମୟୂର ଝଲେ ଶୋଭଇ ଭୂଖଣ୍ଡ ।
ବାଦ୍ୟକାରମାନେ ଥିଲେ ତହିଁ ପାଞ୍ଚକୋଟି
ସୁନାବନ୍ଧା ଶଙ୍ଖସ୍ତୂରେ ଦୁଇ ଲକ୍ଷ ଗୋଟି ।
ଏକାଦଶ କ୍ଷୌଣୀ ବଳ ନେଲେ କଉରବେ
ସାତଜଣ ମାତ୍ର ତହିଁ ଭଜିଲେ ପାଣ୍ଡବେ ।
ପାଞ୍ଚ ପାଣ୍ଡବେ ସାତ୍ୟକି ଆଉ ଜଗନ୍ନାଥ
ଥାଟ ସୈନ୍ୟ କିଛି ନାହିଁ ହେଲେ ଉପସ୍ଥିତ ।
ଆଠସହସ୍ର ଚୌରାଶୀ ସଂଖ୍ୟକ ପହଣ୍ଡ
ଏଥିରେ ହୁଅଇ କ୍ରୋଶେ ଗଣିଲେ ମାର୍କଣ୍ଡ ।
ଚାରି କ୍ରୋଶରେ ଯୋଜନ ଶାସ୍ତ୍ରରେ ସଙ୍ଗତ
ପଞ୍ଚରାଜ୍ୟ ମଧ୍ୟେ ବାରଯୂଣ କୁରୁକ୍ଷେତ୍ର ।
ପୂର୍ବେ ହସ୍ତିନା ପଶ୍ଚିମେ କଇନ୍ତା ଯେ ଜାଣ
ଉତ୍ତର ଦକ୍ଷିଣେ ଯମ ବାରୁଣା ପ୍ରମାଣ ।
ଏ ପଞ୍ଚରାଜ୍ୟ ମଧ୍ୟରେ ବାରଯୂଣ ଭୂଇଁ
ଷଢ଼ ଷଢ଼ ଯୋଜନରେ କଲେ ଖଣ୍ଡ ଦୁଇ ।

ପୂର୍ବ ପଶ୍ଚିମ କରିଣ କଲେ ବେନି ଭାଗ
ଦୁଃଶାସନ ପୂର୍ବଦିଗ ଆବୋରିଲା ବେଗ ।
ଭୀମସେନ ବୋଲେ ପୂର୍ବ ଦିଗଟି ଆମ୍ଭର
ଅନ୍ୟୋଅନି ହୋଇଲେକ ସେ ବେନି ଭାଗର
ଯେବଣ ଭୂମିରେ ଯଶ ସର୍ବେ ଯାନ୍ତି ବଢ଼ି
ଅଯଶ ଭୂମିକୁ ସର୍ବେ ଯାଇଥାନ୍ତି ଛାଡ଼ି ।
ପୂର୍ବଭାଗ ଆବୋରିଲେ ତହିଁ ବଳେ ବେନି
ଉହ ଭୀମଦୁଃଶାସନ ବୋଇଲା ଶକୁନି ।
ପ୍ରଥମ ଅନୁକୂଳରେ କିପାଁ କର ଗୋଳ
ଦୁଇକୂଳ ଛାଡ଼ି ରହ ଦେବା ଧର୍ମଗୁଳ ।
ଶକୁନି ଡାକି ବୋଇଲେ ଦେବ ଜଗନ୍ନାଥ
ଆମ୍ଭେ ଜାଣନାହୁଁ ଗୁଳା ଅଟଇ କେମନ୍ତ ।
ଶକୁନି ବୋଇଲା ଭଲ ମଧ୍ୟପାତ୍ର ଜଣେ
ଦୁରହୁଁ ସେ ଚାହିଁଥିବ ମୁହଁ କରି ତେଣେ ।
ଦୁଇରାଜାଏ ଘେନିଲେ କାଠି ଦୁଇଖଣ୍ଡ
ମଧ୍ୟପାତ୍ର ହସ୍ତେ ଦେବା କରି ଏକରୁଣ୍ଡ ।
ସେ ମଧ୍ୟସ୍ଥ ହସ୍ତେ କାଠି ବେନିଖଣ୍ଡ ଦେବ
ସେ କାଠି ପୂର୍ବ ପଶ୍ଚିମେ ସେହୁ ପକାଇବ ।
ଯାହାର କାଠି ଯେବଣ ଦିଗରେ ପଡ଼ଇ
କର୍ମକୁ ଆଦରି ସେହି ଦିଗ ଆବୋରଇ ।
ବିଦୁରକୁ ରାଇ ଆଜ୍ଞା କଲା କୁରୁପତି
ତୁ ପିତା ଘୁଞ୍ଚ ବାରୁଣା ପର୍ବତର କତି ।
ରାଜା ଆଜ୍ଞା ପାଇ ତହୁଁ ଚଳିଲେ ବିଦୁର
ପର୍ବତ ଉହାଡ଼େ ଗଲେ ପାଞ୍ଚଯୂଣ ଦୂର ।
କିସ ଘେନିବ ବୋଲିଣ ଭାଳେ ଧାର୍ତ୍ତରାଷ୍ଟ୍ରି
ଦେଖିଲା ପଡ଼ିଛି ଦୁଇ ସୁବର୍ଣ୍ଣର କାଠି ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲା ଦୁର୍ଯ୍ୟୋଧନ
ବିଚାରେ କିଏ ଥୋଇଲା କରିଣ ଯତନ ।
ବଡ଼ଖଣ୍ଡ ଦୁର୍ଯ୍ୟୋଧନ ଘେନିଲାକ ବେଗି
ଅଷ୍ଟରତ୍ନ ତା ଉପରେ ଯତ୍ନେ ଅଛି ଲାଗି ।
ଦୁର୍ଯ୍ୟୋଧନ କର ଧରି ବୋଲନ୍ତି ଶ୍ରୀନାଥ
କେ ଥୋଇଲା ଯତ୍ନକରି ଆଣି ଯାକୁ ଏଥ ।
ପନ୍ନଗ ନାରାୟଣ ତୁ ଅଟୁ ଯେ କାଳରେ
କିସ ବା ଅପୂର୍ବ ତୋତେ ଦେବ ଘଟଣାରେ ।
କରେ ପଦ୍ମ ପାଦେ ପଦ୍ମ ଚାଲନ୍ତେଣ ଫୁଟି
ଏ କିସ ଅପୂର୍ବ ତୋତେ ସୁବର୍ଣ୍ଣର କାଠି ।
ଚକ୍ରକୂଟର ବୁଦ୍ଧିକୁ ନରେ ଜ୍ଞାନ କାହିଁ
ଉପାୟରେ ବୋଧି ଦେଲେ ତ୍ରିଦଶର ସାଇଁ ।
ଦ୍ୱାଦଶ ଅଙ୍ଗୁଳ ଖଣ୍ଡି ଘେନେ ଦୁର୍ଯ୍ୟୋଧନ
ଷଡ଼ାଙ୍ଗୁଳ ଖଣ୍ଡିନେଲେ ଯୁଧିଷ୍ଠି ରାଜନ ।

ଦୁଇ ନରପତି ତହୁଁ ହେଲେ ଏକଚିତ୍ତ
ଦୁଇଖଣ୍ଡ ଦେଲେ ନେଇ ଜଗନ୍ନାଥ ହସ୍ତ ।
ତହୁଁ କୃଷ୍ଣ ଡାକିଦେଲେ ଆସ ହେ ବିଦୁର
ଅମ୍ବୁବତୀର ନନ୍ଦନ ମିଳିଲା ସତ୍ୱର ।
ସୁବର୍ଣ୍ଣର ବେନିକାଠି ଘେନି ଜଗନ୍ନାଥ
ଧର୍ମକୁ ସୁମରି ଦେଲେ ବିଦୁରର ହସ୍ତ ।
କରେ ଧରି ବିଚାରଇ ବିଦୁର ମହାତ୍ମା
ମୋତେ ଅଜ୍ଞାନ ତୁ ଜାଣୁ ପୁରୁଷ ଉତ୍ତମା ।
କେଉଁ ଖଣ୍ଡ ଯେ କାହାର ମୋର ଜ୍ଞାନ ନାହିଁ
ପରମାନନ୍ଦ ପୁରୁଷ ତା ବିଚାର ତୁହି ।
ପୂର୍ବଭାଗକୁ ଯେମନ୍ତ ପାଆନ୍ତୁ ଯୁଧିଷ୍ଠି
ତେବେ ଯୁଧିଷ୍ଠିରଙ୍କର ଯିବ ଯେ ଅରିଷ୍ଟି ।
ଏମନ୍ତ କହି ନିର୍ଣ୍ଣୟ କଲେ ବେନି କାଠି
ଯେଣୁ ଯୁଧିଷ୍ଠିର ବଡ଼ ନେବ ବଡ଼ଗୋଟି ।
ସାନଭାଇ ଦୁର୍ଯ୍ୟୋଧନ ସାନ ଖଣ୍ଡି ନେବ
ହୃଦଗତେ ବିଚାରଇ ବିଦୁର ଏ ଭାବ ।
ତହୁଁ ବଡ଼ରୁ ପକାଏ ନେଇ ପୂର୍ବଭାଗେ
ସାନଖଣ୍ଡି ପକାଇଲେ ପଶ୍ଚିମର ଦିଗେ ।
ଯଶ ଦେଖି କଉରବେ କଲେ ଶଙ୍ଖଧ୍ୱନି
ପୂର୍ବଦିଗ ଆବୋରିଲେ କୌରବ ସଇନି ।
ଆନନ୍ଦ ହେଲେ କୌରବ ସଇନି ସରବେ
ମନ ମଧ୍ୟରେ ବିରସ ହୋଇଲେ ପାଣ୍ଡବେ ।
ଗୋବିନ୍ଦ ବୋଇଲେ ଗୋଳ ନ କର ହେ ଆଗ
ଧୀରେ ବୁଝିବା ହୋଇଲା କାର କେଉଁ ଭାଗ ।
ପୂର୍ବ ଖଣ୍ଡକୁ ଆଣିଲା ଶକୁନି ଚତୁର
ମାପନ୍ତେ ଷଡ଼ ଅଙ୍ଗୁଳ ହୋଇଲା ତାହାର ।
ପଶ୍ଚିମ ଖଣ୍ଡକୁ ଆଣି ମାପେ ମନ୍ତ୍ରୀବର
ଦ୍ୱାଦଶ ଅଙ୍ଗୁଳ ହେଲା ମାନଗୋବିନ୍ଦର ।
ମାୟାଧର ପୁରୁଷଙ୍କ ଦେଖ ମାୟାକୂଟ
କଳିକାଳ ଦୁହେଁ ହେଲେ ଉଲଟ ପାଲଟ ।
ନାରାୟଣଙ୍କ ଆଜ୍ଞାରେ ତକ୍ଷଣେ ଲେଉଟି
ବଡ଼ ହେଲା ସାନ ସାନ ହେଲା ବଡ଼କାଠି ।
ଜୟ ଜୟ ଶଙ୍ଖନାଦ କରିଲେ ପାଣ୍ଡବେ
ସାନନ୍ଦରେ ଆବୋରିଲେ ଯାଇ ଦୃଢ଼ଭାବେ ।
ଜୟ ଜୟ ମାୟାଧର ଜଗତମୋହନ
ଚଉଦ ବ୍ରହ୍ମାଣ୍ଡ ପ୍ରାଣୀମାନଙ୍କ ଜୀବନ ।
ଯାହାକୁ ସପକ୍ଷ ତୁହି ହେଉ ଦେବରାୟେ
ସୁବିଧାରେ ଗତିମୁକ୍ତି ସେହି ପ୍ରାଣୀ ପାଏ ।
ଜଗତକାରଣ ନାଥ ତବ ନାମଗୋଟି
ଶାରଳା ଦାସ ସେ ପାଦେ ସବୁବେଳେ ଲୋଟି

## କୁରୁକ୍ଷେତ୍ରରେ ଶୁଭସ୍ତମ୍ଭ ସ୍ଥାପନ ତହିଁ ମଧ୍ୟସ୍ଥ ପୁରୁଷ ଏବଂ ପୂର୍ଣ୍ଣ ପ୍ରଳୟ ଓ ଦେବନାଶନ ବଟ ପ୍ରଭୃତିର ବିବରଣ

ଅଗସ୍ତି ବୋଇଲେ ଶୁଣ ହେ ମନୁରାଜନ
ବିଷ୍ଣୁ କଥା ଶୁଣି ପାପ କରିଲ ଦହନ ।
କେଶବ ଯାହା କରିଲେ ଉଦଯୋଗ ପର୍ବେ
କୂଟ କପଟରେ ମହୀଭାରା ଉଶ୍ୱାସିବେ ।
ଯଥାର୍ଥ ଯୁଦ୍ଧେ ପାଣ୍ଡବେ ନ ହୋଇବେ ସରି
ସହସ୍ରେ ପାଣ୍ଡବେ ଏକ ଭୀଷ୍ମକୁ କି ପାରି ।
କୁରୁକ୍ଷେତ୍ର ଦୁଇଭାଗ ହେଲା କହି ହରି
ତାହା ମଧ୍ୟସ୍ଥକୁ ପାଦନଖେ ଦେଲେ ଚିରି ।
କୃଷ୍ଣ ବାମପାଦ ନଖେ ତହୁଁ ଚିରିଗଲା
ମଧ୍ୟସ୍ଥଳରେ ତାହାର ନଦୀଏ ବହିଲା ।
ତିନିତାଳ ତା ବିସ୍ତାର ଗଭୀର ନ ତାଳ
ସେ ରୁଧିର ନଦୀ କଥା ଶୁଣ ମହୀପାଳ ।
କହନ୍ତି ଅଗସ୍ତି ମୁନି ମନୁରାଜା ଆଗ
କୁରୁକ୍ଷେତ୍ର ରଣଭୂମି ହେଲା ବେନିଭାଗ ।
ପୂର୍ବେ ପାଣ୍ଡବ ପଶ୍ଚିମ ଦିଗେ କଉରବ
ଦୁଇକୂଳର ମଧ୍ୟସ୍ଥ ହେଲେ ବାସୁଦେବ ।
ସମାନ ବେନି ଭାଗରେ ବାଣ୍ଟି କୁରୁକ୍ଷେତ୍ର
ବୋଇଲେ ମଧ୍ୟସ୍ଥଳରେ ଶୁଭସ୍ତମ୍ଭ ପୋତ ।
ଶୁଣି ଶକୁନି ବୋଇଲା କୃଷ୍ଣଙ୍କ ଅଗ୍ରତେ
ଚିହ୍ନି ନ ଥିଲେ ଭୂମିକି ବାରିବା କେମନ୍ତେ ।
କୃଷ୍ଣ ଆଜ୍ଞା କଲେ ଚାହିଁ ଭୀମ ଦୁଃଶାସନ
କୁଣ୍ଡଳି ପରବତକୁ ଚଳ ହୋ ବହନ ।
ଅଗୁରୁ ବୃକ୍ଷରୁ ଅର୍ଦ୍ଧେ ଅଛି ସେ ପର୍ବତେ
ଦ୍ରୋଣ ଛେଦିଥିଲେ ବିଦ୍ୟା ପରୀକ୍ଷା ନିମନ୍ତେ
ସେ ବୃକ୍ଷକୁ ଘେନିଆସ ପର୍ବତ ଉପରୁ
ସହସ୍ରେକ ମାଲ ଦେଲେ ସଙ୍ଗେ ହନ୍ତକାରୁ ।
କୃଷ୍ଣଙ୍କ ଆଗରେ ତହୁଁ ସର୍ବେ ଗଲେ ଚଳି
ଧରିଣ ସେହି ବୃକ୍ଷକୁ ଓଗାଳିଲେ ବଳୀ ।
ବୃକ୍ଷ ଉପାଡ଼ନ୍ତେ ଶୁଭେ ଅତି ଘୋରନାଦ
ଆକାଶେ ଦେବତା ଶୁଣି ହୋଇଲେ ସ୍ତବଧ ।
କନ୍ଦର କମ୍ପିଲା ମହୀ ହେଲା ଟଳମଳ
ପବନ ସ୍ଥକିତ ହେଲା ସମ୍ଭୀଭୂତ ଜଳ ।
ସତ୍ୟଯୁଗେ ଦେବାସୁର ହୋଇ ଏକ ମେଳ
ମନ୍ଦରକୁ ଉପାଡ଼ନ୍ତେ ଶୁଭେ ଯେହ୍ନେ ଗୋଳ ।

ସେପରି କୁରୁ ପାଣ୍ଡବ ମିଳି ବଳ ବେନି
ପର୍ବତ ଉପରୁ ବୃକ୍ଷ ଆଣନ୍ତି ଯେ ଘେନି ।
ସହସ୍ରେ ବାଜଇ ଶଙ୍ଖ ଅଗ୍ରତରେ ମିଳି
ବୀରତୂର ବିଜିଘୋଷ ବାଜଇ କାହାଳି ।
ସହସ୍ରେକ ପାଟଛତ୍ର ସହସ୍ରେ ଚାମର
ସହସ୍ରେ ନେତ ଚିରାଳ ଉଡ଼େ ଫରହର ।
ସହସ୍ରେ ଉଦଣ୍ଡ ପୁଣି ସହସ୍ରେ ଆଲଟ
ସହସ୍ରେ ମୟୂର ଝାଲେ ଦିଶେ ଝଟ ଝଟ ।
ସହସ୍ରେକ ପରମାଣେ ବୀର ଯେ ଦାଉଣ୍ଡି
ଅଷ୍ଟରତନରେ ସେହୁ ହୋଇଅଛି ମଣ୍ଡି ।
ସହସ୍ରେ ସାଙ୍ଗରେ ତାକୁ ନେଲେ ମହାବୀରା
ତା ଆଗେ କରନ୍ତି ନୃତ୍ୟ ସସ୍ରେ ଅପସରା ।
ଆଗ ପଛ ପଟୁଆର କରିଣ ଆଣନ୍ତେ
ଶୂନ୍ୟେ ଦେବତାଏ ଦେଖି ଆନନ୍ଦ ସମସ୍ତେ ।
ତାହା ଦେଖିଣ ଉସତ ହୋଇଲେକ ମହୀ
ଶ୍ରୀକୃଷ୍ଣ ରଥ ଅଗ୍ରତେ ଥୋଇଲାକ ନେଇ ।
ଲୋହିତ ବର୍ଣ୍ଣକୁ ଜିଣି ଦିଶେ ତାର କାୟ
ତାକୁ ଦେଖିଣ ସମସ୍ୟା କଲେ ଦେବରାୟ ।
ଅମୃତ ଶୁଭ ଯୋଗରେ ଲଗ୍ନକୁ ବିଚାରି
ଗର୍ତ୍ତ ଖୋଳିଲେ ସକଳେ ଅନୁକୂଳ କରି ।
ଏମନ୍ତ ସମୟରେ ଯେ ଦେବକୀର ବାଳ
ଦେଖିଲେକ ଭଦଳିଆ ପକ୍ଷୀ ଅନୁକୂଳ ।
ତହୁଁ ଖମ୍ବକୁ ଆପଣେ ଧରି ବାସୁଦେବ
କୁରୁକ୍ଷେତ୍ର ମଧ୍ୟସ୍ଥଳେ ତାକୁ ଦେଲେ ଠାବ ।
ନବତାଳ ପୋତାହେଲା ଉଚ୍ଚ ପାଞ୍ଚତାଳ
ବେନିତାଳ ଗଣ୍ଡି ବେଢ଼ ଅଟଇ କେବଳ ।
ଯେହ୍ନେ ପୃଥୀରେ ବସିଲା ଆସି ମେରୁକିଳା
ତହୁଁ ଅଧିକରେ ଶୋଭା ସେ ଖମ୍ବ ଦିଶିଲା ।
ତାକୁ ଦେଖିଣ ପ୍ରଶଂସା କଲେ କଉରବେ
ବୋଇଲେ ସମର ଭୂଇଁ ପ୍ରାୟ ଦିଶେ ଏବେ ।
ସେହି ବୃକ୍ଷର ଗର୍ଭରେ ପୁରୁଷେକ ଥିଲା
ନାରାୟଣଙ୍କ ଦର୍ଶନେ ମୁକତି ହୋଇଲା ।
ସେହି ବଇକୁଣ୍ଠ ପୁରେ ଯାଇଣ ବିଶ୍ରାମି
ଦର୍ଶନ କରିଲା ତହିଁ ନିରାଲମ୍ବ ସ୍ୱାମୀ ।
ଏହି କଥା ଶୁଣିକରି ବିଲଙ୍କାଧିପତି
ପଚାରନ୍ତି ଅଗସ୍ତିଙ୍କୁ ସବିସ୍ମୟେ ଅତି ।
ଭୋ ମୁନି ଶୁଭ ଖମ୍ବକୁ କୃଷ୍ଣ ଦେଲେ ପୋତି
ତହୁଁ ପୁରୁଷେକ କାହୁଁ ହେଲା ଉତପତ୍ତି ।
କେବଣ ମହାତ୍ମା ସେହୁ କେଉଁ ଶାପେ ଥିଲା
କୁରୁକ୍ଷେତ୍ର ମଣ୍ଡଳରେ ମୁକ୍ତ ହୋଇଗଲା ।

ଅଗସ୍ତି ବୋଇଲେ ତାହା ବହୁକାଳ କଥା
ଶୁଣ ଏକମନୁ ସତ୍ୟଯୁଗର ବାରତା ।
ପୃଥିବୀ ଜଳ ପ୍ରଳୟ ହେଲା ଯେତେବେଳେ
ସମସ୍ତେ ହେଁ ନାଶଗଲେ ଏ ମର୍ତ୍ତ୍ୟମଣ୍ଡଳେ ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ବ୍ରହ୍ମଶରୀରରେ ଯାଇ ହୋଇଲେ ପ୍ରବେଶ ।
ସମସ୍ତ ବ୍ରହ୍ମଙ୍କୁ ବ୍ରହ୍ମା ଘେନି ହୃଦଗତେ
ହଂସ ପୃଷ୍ଠରେ ରହିଲେ କଳ୍ପେ ପରିଯନ୍ତେ ।
ଆହାର ମୈଥୁନ କିବା ନିଦ୍ରା କିଛି ନାହିଁ
ଚୌଦକଳ୍ପ ହଂସପରେ ଉଡୁଥାନ୍ତି ରହି ।
ଉଡ଼ି ଉଡ଼ି କ୍ଳାନ୍ତ ହୋଇ ଚାହାନ୍ତେ ଲେଉଟି
ବ୍ରହ୍ମା ଜାଣନ୍ତି ମରାଳ ମୋତେ ଚାହେଁ ଫୁଟି
ତହୁଁ ଧ୍ୟାନ କରନ୍ତି ସେ ହୃଦରେ ବିଷ୍ଣୁଙ୍କୁ
ସୁମରନ୍ତେ ନାରାୟଣ ଭେଟନ୍ତି ତାହାଙ୍କୁ ।
ବ୍ରହ୍ମା ବୋଲନ୍ତି ହୋଇଲା ଜନ୍ତୁର ପ୍ରଳୟ
ଚୌଦକଳ୍ପ ରହିଲି ମୁଁ ହୋଇ ଶୂନ୍ୟମୟ ।
ତାହା ଦେଖିଣ ବିଚାର କଲେ ଭଗବାନ
ତହୁଁ ସେ ବ୍ରହ୍ମାଙ୍କୁ ଦେଲେ ନିଜ ଗର୍ଭେ ସ୍ଥାନ ।
ଜନ୍ତୁ ପ୍ରଳୟେ ବ୍ରହ୍ମାଙ୍କୁ ରଖି ଗର୍ଭଗତେ
ଗରୁଡ଼ ଉଡ଼ନ୍ତି ଚୌଦକଳ୍ପ ପରିଯନ୍ତେ ।
ତିନିପୁରରେ ଦେଖନ୍ତି ଆଉ ନାହିଁ କିଛି
କେବଳ ନିରାକାର ଯେ ଏକମାତ୍ର ଅଛି ।
ଉଡ଼ି ଉଡ଼ି କ୍ଳାନ୍ତ ହୋଇ ଚାହାନ୍ତେ ଲେଉଟି
ବିଷ୍ଣୁ ଜାଣିଲେ ଗରୁଡ଼ ମୋତେ ଚାହେଁ ଫୁଟି ।
ତହୁଁ ରୁଦ୍ର ନିକଟକୁ ଚଳିଲେ ତୁରିତେ
ଗରୁଡ଼ ବିଷ୍ଣୁଙ୍କୁ ଗର୍ଭେ ରଖି ବିଶ୍ୱନାଥେ ।
ବିଷ୍ଣୁପ୍ରଳୟ କରିଣ ଦେବ କାଶୀବାସୀ
ଅଠାଅଶୀ କଳ୍ପଯାଏ ବୃଷଭରେ ବସି ।
ସେ ରୁଦ୍ରଦେବତା ମଧ୍ୟ ରହି ନ ପାରିଲେ
ଧର୍ମପୁରୁଷକୁ ସେହି ସୁମରଣା କଲେ ।
ଧର୍ମଦେବତା ପ୍ରବେଶ ରୁଦ୍ରଙ୍କର ପାଶ
ବୋଲନ୍ତି କିମର୍ଥେ ଚିନ୍ତାକଲ ବିଶ୍ୱବାସ ।
ଧର୍ମଦେବତାକୁ ରୁଦ୍ରଦେବତା ବୋଲନ୍ତି
ମୋ ଦେଖନ୍ତେ ବ୍ରହ୍ମା ବିଷ୍ଣୁ ହେଲେ ନାଶଯାନ୍ତି
ଅଠାଶୀ କଳ୍ପ ରହିଲୁ ଥାଇ ବୃଷପିଠି
ଏବେ ରହି ନ ପାରିବି ବୋଲନ୍ତି ଧୂର୍ଜଟି ।
ରୁଦ୍ରପ୍ରଳୟ ଜାଣିଣ ତହୁଁ ଧର୍ମଦେବ
ଏହା ବିଚାରି ରୁଦ୍ରଙ୍କୁ ଗର୍ଭେ ଦେଲେ ଠାବ ।
ଧର୍ମଙ୍କ ଉଦରେ ବିଜେ ଦେବ ଶୂଳପାଣି
ରୁଦ୍ର ପ୍ରଳୟ ହୋଇଲା ଶୁଣ ନୃପମଣି ।

ରୁଦ୍ର ଦେବତାଙ୍କୁ ଧର୍ମ ଗର୍ଭରେ ପୂରାଇ
ଚୌରାଶୀ କଳ୍ପ ବଞ୍ଚିଲେ ଧର୍ମ ପୁଣି ତହିଁ ।
ସେ ଧର୍ମଦେବତା ପୁଣି ରହି ନ ପାରିଲେ
ସ୍ଥୂଳ ପୁରୁଷଙ୍କୁ ପୁଣ ସୁମରଣା କଲେ ।
ସ୍ଥୂଳ ପୁରୁଷ ପୁଚ୍ଛିଲେ ଧର୍ମଦେବତାଙ୍କୁ
କେବଣ କାରଣେ ଚିନ୍ତା କରିଲେ ଆମ୍ଭଙ୍କୁ ।
ସ୍ଥୂଳ ପୁରୁଷ ଚରଣେ ଧର୍ମ ପରଣାମି
ବୋଇଲେ ଅକ୍ଷମ ହେଲି ରଖ ଦେବସ୍ୱାମୀ ।
ସ୍ଥୂଳ ପୁରୁଷ ଧର୍ମଙ୍କୁ ଗର୍ଭରେ ଭରିଲେ
ଗର୍ଭରେ ଭରି ଷାଠିଏ କଳପ ବୁଲିଲେ ।
ସେହି ସ୍ଥୂଳପୁରୁଷ ଯେ ନ ପାରିଲେ ରହି
ନିରଞ୍ଜନ ପୁରୁଷଙ୍କୁ ମନମଧ୍ୟେ ଧାୟି ।
ସେ ସ୍ଥୂଳ ରହିଲେ ନିରଞ୍ଜନଙ୍କ ଗର୍ଭରେ
ସତୁରି କଳପ ସେହୁ ରହି ନିର୍ଭୟରେ ।
ସେ ନିରଞ୍ଜନ ପୁରୁଷ ନ ପାରିଲେ ରହି
ନୀଳାମ୍ବର ପୁରୁଷଙ୍କୁ ମନେ ମନେ ଧାୟି ।
ନିରଞ୍ଜନ ସୁମରନ୍ତେ ଦେବ ନୀଳାମ୍ବରେ
କହିଲେ ସେ ଦେବତାଙ୍କୁ ଶୂନ୍ୟ ଶବଦରେ ।
କଥାମାତ୍ରକ ଶୁଭଇ ଦେହ ନ ଦିଶଇ
ସେହି ପୁରୁଷ ଆକାର କିଛିମାତ୍ର ନାହିଁ ।
ସତୁରି କଳପ ବଞ୍ଚି ଦେବ ନିରଞ୍ଜନ
ନୀଳାମ୍ବର ପୁରୁଷଙ୍କ ଦେହେ ହେଲେ ଲୀନ ।
ମନୁରାଜା ଶୁଣ ହେଲା ଏ ମହାପ୍ରଳୟ
ନରଲୋକ ବିଷ୍ଣୁଲୋକ ସର୍ବେ ହେଲେ କ୍ଷୟ
ମରାଳ ବିନତାସୁତ ଆବର ବୃଷଭ
ମହାପ୍ରଳୟରେ ଗର୍ଭେ ରଖି ଆଦିଦେବ ।
ସେ ନିରାକାର ପୁରୁଷ କୋଟି କଳ୍ପଯାଏ
ସମସ୍ତଙ୍କୁ ଗର୍ଭେ ରଖି ରହିବେ ନିର୍ଭୟେ ।
କୋଟି କୋଟି କଳ୍ପ ଗଲା କିଛି ନ ଜାଣନ୍ତି
ଆହାର ମୈଥୁନ ନିଦ୍ରା ନାହିଁ ତାଙ୍କ ଭୀତି ।
ଜଳ ଅନଳ ପବନ କିଛି ମାତ୍ର ନାହିଁ
ଶୂନ୍ୟପୁରୁଷ କେବଳ ଶୂନ୍ୟେ ଛନ୍ତି ରହି ।
ସେହି ଅଣାକାର ଶୂନ୍ୟ ଭୁବନ ରଚିଲେ
ଅଲେଖ ଲେଖ ବିଚିତ୍ର ପୁର ନିର୍ମାଣିଲେ ।
ନିର୍ମଳ ଭୁବନ ଅଟେ ସେ ଅଲେଖ ପୁର
ସତର କୋଟି ଯୋଜନ ତହିଁର ବିସ୍ତାର ।
ଲକ୍ଷ ଲକ୍ଷ ଯୋଜନରେ ଅଟେ ଚାରିଦ୍ୱାର
ଲକ୍ଷେକ ଯୋଜନ ଉଚ୍ଚ ତହିଁର ପ୍ରାକାର ।
ସୁବର୍ଣ୍ଣ ପାବଚ୍ଛ ପୁଣି ସୁବର୍ଣ୍ଣର ପୀଢ଼
ତହିଁରେ ମର୍କତ ଖଞ୍ଜା କରି ଚାରିବେଢ଼ ।
ମାରାଗର ଶ୍ରେଣୀ ପୁଣି ନୀଳା କୋଣକାଣ୍ଡ
ଉଦୟ ଗିରିରେ ଯେହ୍ନେ ଦିଶେ ମାରତଣ୍ଡ ।
ତେମନ୍ତ ପରକାରରେ ଚାଳଘର ଦିଶି
ସ୍ୱୟଂ ନିର୍ମାଣ କରିଲେ ଯାହା ବ୍ରହ୍ମରାଶି ।
ସ୍ଫଟିକର ସ୍ତମ୍ଭ ତହିଁ ବୈଡୁର୍ଯ୍ୟର ଓରା
ଅଷ୍ଟରତନ ଖଞ୍ଜାଣି ସର୍ବ ଦିଶେ ତୋରା ।
ଆପଣେ ସେ ଶୂନ୍ୟଗାମୀ ଶୂନ୍ୟେ ପୁର ଖଞ୍ଜି
ନବସାଗର ଆଦିତ୍ୟ ପ୍ରଭା ତହିଁ ଗଞ୍ଜି ।
ସେହି ଅଲେଖ ଭୂମିରେ ସ୍ୱାମୀଙ୍କ ବିଶ୍ରାମ
ଶେଷ ମହୋଦଧି ତାର ବଇକୁଣ୍ଠ ନାମ ।
ସେ ସିଂହଦ୍ୱାର ବତ୍ରିଶ ସସ୍ରଯୂଣ ସ୍ଥଳି
ଉତ୍ସର୍ଗ ଏଗାର ଯୂଣ ଦ୍ୱିକ୍ରୋଶରୁ ବଳି ।
ଜୟ ବିଜୟ ସେ ଦ୍ୱାରେ ଦ୍ୱାରପାଳ ବେନି
ଲକ୍ଷେ ଲକ୍ଷେ ଭାର ଗଦା ସେହୁ ଥାନ୍ତି ଘେନି ।
ସେ ବୈକୁଣ୍ଠ ବେଢ଼ିଅଛି ମହାପଦ୍ମ ନାଗ
ନବଲକ୍ଷ ଯୂଣ ତାର ଫଣାର ଉତ୍ସର୍ଗ ।
ନାସାର ପବନ ତାର ମହାବିଷଜ୍ୱାଳା
ଆଠଗୋଟି ସୂର୍ଯ୍ୟତେଜ ତାର ବେନି ଡୋଳା
କୁମ୍ଭକ ନାମରେ ତହିଁ ଗରୁଡ଼େକ ଅଛି
ଚାରି ଚାରି ଶଙ୍ଖ ତାର ଅଟେ ବେନିପକ୍ଷୀ ।
ସପ୍ତଶଙ୍ଖ ଯୋଜନରେ ଅଟେ ବେନିଗୋଡ଼
ଶତ ଯୋଜନ ଅଟଇ ତାହାର ଲାଙ୍ଗୁଡ଼ ।
ପିଠିର ମୋଟ ଅଟଇ ଯୂଣ ଶଙ୍ଖ ଦଶ
ଦେବ ନାଶନ ବୃକ୍ଷର ଉପରେ ତା ବାସ ।
ସେହି ଦ୍ୱାରେ ଅଛି ଦେବନାଶନର ବୃକ୍ଷ
ଦ୍ୱିଲକ୍ଷ ଯୁଣ ବିସ୍ତାର ଉଚ୍ଚ ଷଡ଼ଲକ୍ଷ ।
ସେହି ବୃକ୍ଷଗୋଟି ନାମ ଅଟେ ଦେବନାଶ
ବିଷ୍ଣୁନାଥଙ୍କ ଶରୀର ପ୍ରାୟେ ତାର ଆସ୍ୟ ।
ଅସଂଖ୍ୟ ଅସଂଖ୍ୟ ବିଷ୍ଣୁ ବିଜେ ସେହିସ୍ଥାନେ
ତହୁଁ ଅବତୀର୍ଣ୍ଣ ଦଶ ଅବତାରମାନେ ।
ମତ୍ସ୍ୟ କୁରୁମ ବରାହ ନୃସିଂହ ବାମନ
ପରଶୁଧର ଶ୍ରୀରାମ କାହ୍ନୁ ସଙ୍କର୍ଷଣ ।
ବଉଦ୍ଧ କଳକୀ ଆଦି ଦଶ ଅବତାର
ସେହି ସ୍ୱାମୀଙ୍କ ଅଙ୍ଗରୁ ହୁଅନ୍ତି ବାହାର ।
ଭୋଗ ତାଙ୍କର ସରିଲେ ଅଙ୍ଗେ ହୁନ୍ତି ଲୀନ
ପୁଣିହିଁ ଆଜ୍ଞା ହୋଇଲେ ହୁନ୍ତି ଉତପନ୍ନ ।
ସମସ୍ତଙ୍କୁ ଗର୍ଭେ ରଖି ସେହି ବିଶ୍ୱବାସୀ
ସତୁରି କଳ୍ପ ପର୍ଯ୍ୟନ୍ତେ ଥାଆନ୍ତି ସେ ବସି ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ଜଳ ସ୍ଥଳ ଅନଳାଦି ସବୁ ଗଲା ନାଶ ।

ନାହିଁ ଯୋଗ ନାହିଁ ଚନ୍ଦ୍ର ନାହିଁ ସୂର୍ଯ୍ୟତେଜ
ନାହିଁ ବ୍ରହ୍ମା ନାହିଁ ବିଷ୍ଣୁ ନାହିଁ ଦେବରାଜ ।
ନାହିଁ ସ୍ୱର୍ଗ ନାହିଁ ମର୍ତ୍ତ୍ୟ ନାହିଁ ବା ପାତାଳ
ନାହିଁ ତପତ ଶୀତଳ ନାହିଁ ଦିଗପାଳ ।
ନର ନାଗ ଯକ୍ଷ ଦେବ କିନ୍ନରହିଁ ନାହିଁ
ଏକମାତ୍ର ସେ ପୁରୁଷ ଅଛନ୍ତି ଯେ ରହି ।
କେତେକାଳେ ସେ ପୁରୁଷ ହାଇଏ ମାରିଲେ
ସେ ହାଇ ଭିତରୁ ବାୟୁ ବାହାର ହୋଇଲେ ।
ବାୟୁ ଯୋଗପୁରଷର ଏକ ଅବତାର
ଯୋଗ ପୁରୁଷର ତହୁଁ ତ୍ରିଗୁଣ ବାହାର ।
ତ୍ରିଗୁଣର ତହୁଁ ହେଲା ନିରଞ୍ଜନ ଜାତ
ନିରଞ୍ଜନ ତହୁଁ ସ୍ଥୂଳ ପୁରୁଷ ସମ୍ଭୂତ ।
ସେ ସ୍ଥୂଳ ପୁରୁଷ ତହୁଁ ଧର୍ମ ଜାତହେଲେ
ସେ ଧର୍ମର ତହୁଁ ତିନିପୁତ୍ର ଉପୁଜିଲେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେ ତିନିଙ୍କ ନାମ
ତାହାଙ୍କୁ ରାଇ ଆଦେଶ ଦେଲେ ଦେବଧର୍ମ ।
ବ୍ରହ୍ମାଙ୍କୁ ବୋଇଲେ ତୁହି ସୃଷ୍ଟି ଜାତକର
ବିଷ୍ଣୁଙ୍କୁ ବୋଇଲେ ତୁହି ଦାନବଙ୍କୁ ମାର ।
ଈଶ୍ୱରଙ୍କୁ ବୋଇଲେ ତୁ ସାଧ ଯୋଗଜ୍ଞାନ
ଏମନ୍ତ କହି ମହାତ୍ମା ହେଲେ ଅନ୍ତର୍ଦ୍ଧାନ ।
ସେ ଈଶ୍ୱର ତହୁଁ ହେଲା କପିଳ ସଂଜାତ
ସେ କପିଳ ତହୁଁ ଜାତ ହେଲେ ଦେବ ସାତ ।
ଆବର ଲଭିଲେ ଜନ୍ମ ଜ୍ୟୋତି ସୁଷୁମୁନ
ଅଜପା ଜପା ଗାୟତ୍ରୀ ସାତ ଉତପନ୍ନ ।
ଶେଷ ସାତ ଦେବର ଯେ ସପ୍ତ ଅବତାର
ନବଖଣ୍ଡ ପୃଥ୍ୱୀସହ ସପତସାଗର ।
ସଲିଳ ସ୍ଥଳ ଅନଳ ତପନ ତାପନ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ଆଦି ଦିଗପାଳ ମାନ ।
ବ୍ରହ୍ମା ଦକ୍ଷିଣ ବାହୁରୁ ପୁରୁଷେକ ଜାତ
ତାହାକୁ ଦଇତ ନାମ କହିଲେ ବିଧାତ ।
ଷାଠିଏ ସହସ୍ର କନ୍ୟା ସେ ଦକ୍ଷର ହେଲେ
ଦିଗପାଳମାନେ ତାଙ୍କୁ ବିବାହ ହୋଇଲେ ।
ସେହି କନ୍ୟାଙ୍କ ଗର୍ଭରୁ ସର୍ବେ ହେଲେ ଜାତ
ଅଷ୍ଟକୁଳର ନାମ ଆଠ ପର୍ବତ ସମ୍ଭୂତ ।
ଦେବ ଦାନବ ମାନବ ହେଲେ ଅବତାର
ସୁରନାଥ ଅମରାଦି ପୁଣି ବିଦ୍ୟାଧର ।
ବନସ୍ତ କନ୍ଦର ଲତା ପୁଣ୍ୟ ବୃକ୍ଷମାନେ
ଗ୍ରହଙ୍କ ସଙ୍ଗରେ ଜାତ ମେଘମାଳାମାନେ ।
ଚାରିଖାନି ଚୌରାଅଶୀ ଲକ୍ଷ ଜୀବପନ୍ତି
ଯେ ଯାହାର ଅନୁକ୍ରମେ ଜନମ ହୁଅନ୍ତି ।

ଏହି ପ୍ରକାରେ ଜନମ ଦେଇ ମହାତମା
ବୈକୁଣ୍ଠେ ପ୍ରବେଶ ହେଲେ ରୁଦ୍ରପାଳ ବ୍ରହ୍ମା ।
ଦ୍ୱାରପାଳ ଭିତରକୁ ନ ଦିଅନ୍ତେ ପଶି
ବାହୁଡ଼ି ଦେବନାଶନ ବୃକ୍ଷ ତଳେ ବସି ।
ସେ ଦେବନାଶନ ତଳେ ବସି ବେଦପତି
ସମୟେକ ପିତାମହ ମନେକଲେ ଭ୍ରାନ୍ତି ।
ଯେତେ ବ୍ରହ୍ମାଏ ଆସନ୍ତି ଦରଶନ କରି
ସେ ବୃକ୍ଷ ତରୁରୁ କେହି ନ ଯାନ୍ତି ଉବୁରି ।
ଶୁଣ ବୈବସ୍ୱତ ମନୁ ବୋଲେ ବ୍ରହ୍ମବେତ୍ତା
ସେ ବୃକ୍ଷତଳକୁ ଗଲେ ଛାଡ଼େ ସର୍ବଚିନ୍ତା ।
ମହାସୁସ୍ଥ ହୋଇ ତହିଁ ଥାନ୍ତି ବହୁକାଳ
ସମୟେ ପ୍ରାଣ ତେଜନ୍ତି ସେହି ବୃକ୍ଷତଳ ।
ସୁସ୍ଥପାଇ ସେହି ବୃକ୍ଷତଳରେ ରହିଲେ
ଭିତରକୁ ଯହୁଁ ସେହୁ ଯାଇ ନ ପାରିଲେ ।
ଶତେକକଳ୍ପ ପରିଯନ୍ତେ ବୃକ୍ଷମୂଳେ ଥାନ୍ତି
ସମୟ ଆସନ୍ତେ କାଳ ମୁଖରେ ପଡ଼ନ୍ତି ।
ଗଗନଚାରୀ ନାମକ ଏକଇ ନାରଦ
ସେ ଆସି ପ୍ରବେଶ ହେଲା ପିତାର ସନ୍ନିଧି ।
ପିତାଙ୍କର ପ୍ରାଣତ୍ୟାଗ ହୋଇବାର ବେଳେ
ସେ ନାରଦ ଜଣାଇଲା ପ୍ରାଣ ଶେଷକାଳେ ।
ଭୋ ପିତା ତୁମ୍ଭେ ତ ଏହା ନ ପାରିଲ ଜାଣି
ଏ ବୃକ୍ଷତଳେ ବସିଲ ସୁଖ ପାଇ ପୁଣି ।
ଯେତେ ଦେବତା ଆସନ୍ତି ଏ ବୃକ୍ଷ ତଳକୁ
କେହି ବର୍ତ୍ତିଯାଇ ନାହିଁ କହିଲେ ପିତାକୁ ।
ମୋତେ ରାଇ ଆଜ୍ଞାଦେଲେ ପ୍ରଭୁ ଚକ୍ରପାଣି
ମୁଁ ବସିଛି ସବୁ ବ୍ରହ୍ମା ସମସ୍ତଙ୍କୁ ଗଣି ।
ସତାନବେ କୋଟି ହେଲା ବ୍ରହ୍ମାଙ୍କର ଅସ୍ଥି
ଆହୁରି ଅନେକ ଅସ୍ଥି ନଷ୍ଟ ହୋଇଅଛି ।
ଶ୍ୱେତବ୍ରହ୍ମା କୁଶବ୍ରହ୍ମା କେତୁବ୍ରହ୍ମା ପୁଣି
ଚନ୍ଦ୍ରବ୍ରହ୍ମା ସୋମବ୍ରହ୍ମା ଆଉ ପଦ୍ମଯୋନି ।
ରୁଦ୍ରେଶ୍ୱର ବ୍ରହ୍ମା ପୁଣ ବ୍ରହ୍ମା ମନ୍ଦପାଳ
ସନନ୍ଦ ମନ୍ଦର ବ୍ରହ୍ମା ଆଉ ରୁଦ୍ରପାଳ ।
ଏମନ୍ତେ ବହୁତ ବ୍ରହ୍ମା ହୋଇଛନ୍ତି ହତ
ଶ୍ରୀବତ୍ସ ପାଞ୍ଜିରେ ତାହା ହୋଇଛି ଲିଖିତ ।
ଚତୁର୍ମୁଖ ଶତମୁଖ ସସ୍ରମୁଖ ଧାରୀ
ଅୟୁତେକ ମୁଖ ଲକ୍ଷ ମୁଖ ଆଦିକରି ।
କୋଟିମୁଖ ବ୍ରହ୍ମା ଅସ୍ଥି ନ ମିଳଇ କିଛି
ଗଗନଚାରୀ ନାରଦ କହିଲେ ଯେ ବାଛି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର କେତେ ଇନ୍ଦ୍ରଦେବ
ଯମ କୁବେର ପବନ ନାଶଯାନ୍ତି ସର୍ବ ।

ବାରି ନ ପାରିଲି ମୁହିଁ ଏହାଙ୍କର ଶିର
ନାରଦ କହନ୍ତେ ରୁଦ୍ରପାଳଙ୍କ ଆଗର ।
ନାରଦ ବଚନେ କୋପ କରି ଦେବପତି
ବୋଲେ ପ୍ରାଣହାରୀ ବୃକ୍ଷ କିପାଁ ଅଛି ଏଥି ।
ବୈକୁଣ୍ଠ ଭୁବନର କି ଅଟେ ଏହିକଥା
ଯାରେ ବୃକ୍ଷ ବିଷ୍ଣୁପୁରେ ଆଉ ତୁହି ନ ଥା ।
ଅଭିଶାପ ବାକ୍ୟ ଶୁଣି ଭୟେ ଦେବନାଶ
କରଯୋଡ଼ି ଜଣାଇଲା ପିତାମହ ପାଶ ।
ଅଳ୍ପଦୋଷେ କୋପକରି ଦେଲ ବଡ଼ କଷ୍ଟ
ଏ ଶାପକୁ ଅନୁଗ୍ରହ କର ମୁକ୍ତିବାଟ ।
ବ୍ରହ୍ମା ବୋଇଲେ ତୁହି ତ ଅଟୁ ଦେବବୃକ୍ଷ
ବିଷ୍ଣୁ ଦ୍ୱାରେ ଥାଇ ସର୍ବ ଦେବଙ୍କ ବିପକ୍ଷ ।
ତୋର ତଳେ ପଡ଼ି ନଷ୍ଟ ହେଲେ ଦେବତାଏ
ତାଙ୍କୁ ଦୟା ନ ବହିଲୁ କିଞ୍ଚିତ ହୃଦୟେ ।
ପ୍ରାଣତ୍ୟାଗବେଳେ ବ୍ରହ୍ମା କହିଲେ କୋପରେ
ମୁକତ ହୋଇବୁ ଲକ୍ଷେ ଛତିଶ ବର୍ଷରେ ।
ସତ୍ୟ ଯେ ସତର ଲକ୍ଷ ସସ୍ର ଅଠାଇଶ
ବାରଲକ୍ଷ ଛୟାନବେ ତ୍ରେତାର ପ୍ରକାଶ ।
ଦ୍ୱାପର ଯେ ଆଠଲକ୍ଷ ଚୌଷଠି ହଜାର
ଚାରିଲକ୍ଷ ବତିଶ ଯେ ସସ୍ର କଳି ସାର ।
ଏହି ଚାରିଯୁଗ ଅନ୍ତେ ଦ୍ୱାପର ହୋଇବ
ଗୋଲକ ନାମରେ ଇନ୍ଦ୍ର ସ୍ୱର୍ଗରେ ବସିବ ।
ସେ ଦ୍ୱାପର ଆଠଲକ୍ଷ ଚୌଷଠିର ଅନ୍ତେ
ବୈବସ୍ୱତ ମନୁ ଭୋଗ ହୋଇବ ଲେଖନ୍ତେ ।
ଗୁଞ୍ଜି ନାମକ ବ୍ରହ୍ମାଏ ଜୟନ୍ତିକ ଯମ
ବିରୂପା ନାମରେ କାଳ ପ୍ଲାବକ ଯେ ଧର୍ମ ।
ସମୀର ନାମେ ପବନ ବହିବ ଯେ ପୃଥ୍ୱୀ
ସୌଗ୍ରହ ନାମେ ବାସୁକୀ ହୋଇଥିବ ତଥି ।
ସୋମକ ନାମରେ ରୁଦ୍ର ଉଗର ନାରଦ
ଭାନୁ ନାମରେ ଆଦିତ୍ୟ କାମ୍ୟକଟି ଚନ୍ଦ୍ର ।
ସେ ଯୁଗରେ ବିଷ୍ଣୁ ଶୁକ୍ଳାମ୍ବର ଅବତାର
କୁନ୍ଦପୁଷ୍ପପ୍ରାୟେ ନାରାୟଣଙ୍କ ଶରୀର ।
ସେହି ଦ୍ୱାରରେ ଅଗୁରୁ ବୃକ୍ଷ ହୋଇଥିବୁ
ବାରୁଣା କୁଣ୍ଡଳଗିରିପରେ ବିକାଶିବୁ ।
ତ୍ୱଷ୍ଟା ଋଷି ଶାପେ ଚନ୍ଦ୍ର ହେବ ଭସ୍ମୀଭୂତ
ପଞ୍ଚମୂର୍ତ୍ତି ହୋଇ ପୃଥ୍ୱୀ ମଞ୍ଚେ ହେବ ଜାତ ।
ଯୁଧିଷ୍ଠି ଭୀମାର୍ଜ୍ଜୁନ ନକୁଳ ସହଦେବ
ପନ୍ନଗ ବିଷ୍ଣୁ ହୋଇବ ଶତେ କଉରବ ।
ପର୍ଶୁରାମଙ୍କ ପ୍ରସାଦେ ଦ୍ରୋଣ ହୋଇ ସିଦ୍ଧା
ପଞ୍ଚୋଉର ଭାଇଙ୍କି ସେ ଶିଖାଇବେ ବିଦ୍ୟା ।
ତାହାର ବିଦ୍ୟା ପରୀକ୍ଷା କରିବା ନିମନ୍ତେ
ଦ୍ରୋଣ ଛେଦିବ ତୋହର ଡାଳପତ୍ର ଯେତେ ।
ତୁ ଯେମନ୍ତେ ଅନିମିଷେ ଦେବ ପ୍ରାଣ ହରୁ
ସେହିପରି ତୋର ଅଙ୍ଗ ଛେଦୁ ଦ୍ରୋଣଗୁରୁ ।
ତୋର ମୂଳେ ଦେବଅସ୍ଥି ଯେହ୍ନେ କୁଢ଼ କୁଢ଼
ସେପରି ପୃଥ୍ୱୀରେ ରକ୍ତନଦୀରେ ତୁ ବୁଡ଼ ।
ସେ ଦ୍ୱାପରେ ଆଠଲକ୍ଷ ବର୍ଷର ସମ୍ପୂର୍ଣ୍ଣେ
ପାଣ୍ଡବକୌରବେ ତହିଁ ହେବେ ଅନ୍ୟୋଅନ୍ୟେ
ଇନ୍ଦ୍ରପ୍ରସ୍ଥ ବାରୁଣାର ଦୁଇ ମଧ ଭାଗେ
କୁରୁକ୍ଷେତ୍ର ଦୁଇଭାଗେ ବଣ୍ଟାହେବ ଆଗେ ।
କୃଷ୍ଣ ଆଜ୍ଞାକ୍ରମେ ଭୀମ ଦୁଃଶାସନ ବେନି
କୁଣ୍ଡଳୀପର୍ବତୁଁ ତୋତେ ଆସିବେ ସେ ଘେନି
ଶ୍ରୀକୃଷ୍ଣ ପୋତିବେ ତୋତେ ମଧ୍ୟସ୍ଥଳେ ନେଇ
ମୁକତ ହୋଇ ଆସିବୁ ତେବେ ତୁହି ଯାଇ ।
ଶ୍ରୀକୃଷ୍ଣ କୁରୁ ପାଣ୍ଡବ କୁରୁକ୍ଷେତ୍ର ସ୍ଥାନ
ଦର୍ଶନ କରି ଆସିବୁ ତେବେ ନିଜ ସ୍ଥାନ ।
ରକତ ନଦୀରେ ତୋର ଶାଖା ବୁଡ଼ିଯିବ
ମର୍ତ୍ତ୍ୟରେ ରକ୍ତଚନ୍ଦନ ତୋର ନାମ ହେବ ।
ଶୁଣ ହେ ମହାପୁରୁଷ କହେ ବ୍ରହ୍ମବେତ୍ତା
ତୁ ଯେ ପୁଚ୍ଛାକଲୁ ଶୁଭସ୍ତମ୍ଭର ବାରତା ।
ବ୍ରହ୍ମାଙ୍କର ଶାପ ପାଇ ମଧପୁରେ ଥିଲା
ନାରାୟଣ ଦରଶନେ ମୁକତ ହୋଇଲା ।
ଜୟ ଜୟ ଜଗନ୍ନାଥ ଜଗତ ତାରଣ
ଶାରଳା ଦାସ ତୋ ପାଦେ ପଶଇ ଶରଣ ।

■ ■ ■

## ଭାରତୀୟ ରାଜାମାନଙ୍କୁ ଯୁଦ୍ଧ ନିମନ୍ତେ ଆମନ୍ତ୍ରଣ

ସାନନ୍ଦେ କହିଲେ ପୁଣ ବୈବସ୍ୱତ ମନୁ
ଏବେ ଯୁଦ୍ଧ ସମାଚାର କହ କୁମ୍ଭସୂନୁ ।
କହନ୍ତି ଅଗସ୍ତି ମୁନି ପଣ୍ଡିତ ଅଗ୍ରଣୀ
ଶୁଣ ମନ ଦେଇ ଏବେ ଆହେ ନୃପମଣି ।
ଆଶ୍ୱିନ ଶୁକଳପକ୍ଷ ଦଶମୀର ଦିନ
ପଣ୍ଡିତବାର ଶ୍ରବଣା ଅଟେ ବିଦ୍ୟମାନ ।
ପୂର୍ବେ ପାଣ୍ଡବ ପଶ୍ଚିମଦିଗେ କଉରବ
ଦୁର୍ଯ୍ୟୋଧନ ପୁଚ୍ଛାକଲେ ଯୁଧିଷ୍ଠିର ଦେବ ।
ବାବୁ ସମର ହୋଇବ ତୋହର ମୋହର
ତୁମ୍ଭେ ଶତଭାଇ ଆମ୍ଭେ ପଞ୍ଚ ସହୋଦର ।
ତୁମ୍ଭର ଆମ୍ଭର ସିନା ହୋଇଲା ଅଭାବ
ବନ୍ଧୁ ବାନ୍ଧବେ କିପାଇଁ ନାଶଯିବେ ସର୍ବ ।
ସେମାନେ ମହତଆତ୍ମା ଆଉ ପୁଣ୍ୟ ଜନ
କୁଟୁମ୍ବ ପୋଷିବା ପାଇଁ କରନ୍ତି ବିଧାନ ।

ରାଜ୍ୟ ରାଜ୍ୟଭାର ଆଉ ଧନର ନିମନ୍ତେ
ଆମ୍ଭେ ନାଶ କରାଇବା କୁଟୁମ୍ବ କେମନ୍ତେ ।
ଦୁର୍ଯ୍ୟୋଧନ ବୋଲେ ଯୁକ୍ତିଯୁକ୍ତ ଏ ନୁହଇ
ବନ୍ଧୁପଣ ଜାଣିବାର ବେଳ ସେ ଅଟଇ ।
ବିବାଦରେ ରାଜଦ୍ୱାରେ ଆବର ଶ୍ମଶାନେ
ଏତେ ସ୍ଥାନରେ ପରୀକ୍ଷା ହୁଅନ୍ତି ବନ୍ଧୁମାନେ ।
ଦୁଇକୁଳର ଆମ୍ଭର ହୋଇବ ବିବାଦ
ସମସ୍ତେ ଜାଣିବେ କୁରୁ ପାଣ୍ଡବଙ୍କ ଯୁଦ୍ଧ ।
ସକଳ ସ୍ଥାନକୁ ଏବେ ପଠାଇବା ଦୂତ
ସକଳ ରାଜାମାନଙ୍କୁ କରାଇବା ଜ୍ଞାତ ।
ଯେହୁ ଯାହାର ସପକ୍ଷ ଆସୁ ସୈନ୍ୟ ଘେନି
ଦେଖିବା କାହାର କେତେ ମିଳଇ ସଇନି ।
ଦୁର୍ଯ୍ୟୋଧନ ଶାଢ଼ି ଦେଲା ଶଲ୍ୟ ଶକୁନିକି
ଜୟଦ୍ରଥ ବିକର୍ଣ୍ଣ ଯେ ଘେନି ଏ ଚାରିଙ୍କି ।
ହେ ପାଣ୍ଡବ ତୁମ୍ଭେ ଦିଅ ଦୂତ ଜଣ ଚାରି
ଶୁଭ ଅନୁକୂଳେ ଯାନ୍ତୁ ନିମନ୍ତ୍ରଣ କରି ।
ଯୁଧିଷ୍ଠି ଦେବ ବୋଇଲେ ନାହିଁ ମୋର ଦୂତ
ଶଲ୍ୟ ମନ୍ତ୍ରୀ ଯା କରିବେ ମୋର ସନମତ ।
ତୁମ୍ଭେ ଚାରିଜଣ ସତ୍ୟଧର୍ମକୁ ଆଚରି
ଶୁଭ ଅନୁକୂଳ କର ମଙ୍ଗଳ ଉଚ୍ଚାରି ।
ପଶ୍ଚିମ ଦିଗକୁ ଶଲ୍ୟ ଉତ୍ତରେ ବିକର୍ଣ୍ଣ
ଦକ୍ଷିଣ ଦିଗେ ଶକୁନି ପୂର୍ବେ ସିନ୍ଧୁ ରାଣ ।
ଦୁର୍ଯ୍ୟୋଧନ ବୋଇଲାକ ନିରଞ୍ଜନ ରାଣ
ଦୁଇପକ୍ଷ ନାମ କହି କର ନିମନ୍ତ୍ରଣ ।
ଯାହାର ଯାହା ସହିତ ଥିବ ପ୍ରୀତିଭାବ
ଇଚ୍ଛାରେ ତାହା ସହିତ ଆସି ଯେ ମିଳିବ ।
ଆଜ୍ଞା ପ୍ରମାଣେ ଚଳିଲେ ଶଲ୍ୟ ଯେ ଶକୁନି
ଜୟଦ୍ରଥ ବିକର୍ଣ୍ଣକୁ ସଙ୍ଗତରେ ଘେନି ।
ସବୁ ଦେଶରେ ପଶନ୍ତି ସମଦଣ୍ଡ ଘେନି
ବୋଲନ୍ତି କୁରୁପାଣ୍ଡବ ହେଲେ ଅନ୍ୟୋଅନି ।
ଗୁଆ ଦେଇଣ ବୋଲନ୍ତି ଯାଠାରେ ଯା ପ୍ରୀତି
ଥାଟ ଘେନିଣ ମିଳିବ ତାହାଙ୍କର କତି ।
ପୂର୍ବଦିଗରେ ଜୟନ୍ତ ଯୁଧିଷ୍ଠିର ଭାଗ
ପଶ୍ଚିମେ ହସ୍ତିନା ଅଟେ ଦୁର୍ଯ୍ୟୋଧନ ଦିଗ
ପୂର୍ବର ଦଧିମଙ୍ଗଳ ବୋଲି ଏକ ରାଜା
ତିନିକ୍ଷୌଣୀ ବଳେ କଲା ଯୁଧିଷ୍ଠିଙ୍କୁ ପୂଜା ।
ନିର୍ଝର ଦେଶର ରାଜା ନାମ ଗଣପତି
ପାଞ୍ଚକ୍ଷୌଣୀ ବଳେ ଆସେ ଯୁଧିଷ୍ଠିଙ୍କ କତି ।
ମହୀଧର ଦେଶ ରାଜା ହରି ନରପତି
ସାତକ୍ଷୌଣୀ ବଳେ ଆସେ ଦୁର୍ଯ୍ୟୋଧନ କତି

ନିରଞ୍ଜନ ଦେଶ ରାଜା ନାମ ବୀରବାହୁ
ନବକ୍ଷୌଣୀ ସୈନ୍ୟେମିଳେ ହସ୍ତିନାରେ ସେହୁ
ମାନଭଙ୍ଗ ଦେଶ ରାଜା ଶ୍ରୀମାନ ଅର୍ଜ୍ଜୁନ
ବେନିକ୍ଷୌଣୀ ବଳେ କଲା ଧର୍ମଙ୍କୁ ଦର୍ଶନ ।
ରଣଭଙ୍ଗ ଦେଶ ରାଜା ନାମ ଶମ୍ଭୁରାଣ
ନବକ୍ଷୌଣୀ ସୈନ୍ୟେ କଲା ହସ୍ତିନା ପ୍ରୟାଣ ।
ଉତ୍ତମ ଦେଶର କେତୁ ନାମେ ନରପତି
ଷଡ଼କ୍ଷୌଣୀ ସୈନ୍ୟେମିଳେ ଦୁର୍ଯ୍ୟୋଧନ କତି
ଅରବିନ୍ଦ ଦେଶରାଜା ନାମ କର୍ଣ୍ଣକେଶୀ
ଏଗାର କ୍ଷଉଣୀ ବଳେ ଦୁର୍ଯ୍ୟୋଧନେ ପଶି ।
ପଶ୍ଚିମ ଦେଶର ରାଜା ଭୀଷ୍ମ ଚକ୍ରବର୍ତ୍ତୀ
ତିନିକ୍ଷୌଣୀ ବଳେ ଆସେ ଧର୍ମଙ୍କର କତି ।
ବାଣପୁର ନଗ୍ର ରାଜା ଚଉବିଂଶ ମଲ୍ଲେ
ସାତକ୍ଷୌଣୀ ବଳ ମିଳେ ଦୁର୍ଯ୍ୟୋଧନ ତୁଲେ ।
ମଣ୍ଡଧିର ରାଜା ଅଟେ କକ୍ଷ ଜଗତ୍ ଶ୍ରେଷ୍ଠୀ
ସେ ରାଜା ଦର୍ଶନ କଲା ଯାଇଣ ଯୁଧିଷ୍ଠି ।
ପଦ୍ମଦଳ ଦେଶ ରାଜା ଶ୍ରୀପଦ୍ମ କେଶରୀ
ଚାରିକ୍ଷୌଣୀ ବଳେ ଧର୍ମେ ସେବେ ଆସିକରି
ବେଦପୁର ଦେଶ ରାଜା ନାମ ମନ୍ଦପାଳ
ହସ୍ତିନାକୁ ଚଳେ ଚାରିକ୍ଷୌଣୀ ଘେନି ବଳ ।
ଜରାସନ୍ଧ ପୁତ୍ର ଜୟଦେବ ସହଦେବ
ସାତକ୍ଷୌଣୀ ବଳେ ଚଳେ ଯୁଧିଷ୍ଠିର ଠାବ ।
କାମପାଳ ଦେଶ ରାଜା ନାମ କାମପାଳ
ହସ୍ତିନାକୁ ଚଳେ ଘେନି ଦଶକ୍ଷୌଣୀ ବଳ ।
କଟଫା ଦେଶର ରାଜା କମଳ ନୃମଣି
ଦୁର୍ଯ୍ୟୋଧନଭେଟେ ଦଶକ୍ଷୌଣୀ ସୈନ୍ୟଘେନି
ମାଳବ ଦେଶର ରାଜା ନାମ କୃପବ୍ରହ୍ମା
ତାହାର ହସ୍ତୀର ନାମ ଅଟେ ଅଶ୍ୱତ୍ଥାମା ।
ନବକ୍ଷୌଣୀ ବଳ ଘେନି ସେହୁ ନୃପସାଇଁ
ଦୁର୍ଯ୍ୟୋଧନ ରାଜାକୁ ସେ ଦର୍ଶନ କରଇ ।
କାଶୀଦେଶ ନୃପବର ନାମ କାଶୀଶ୍ୱର
ପରାର୍ଦ୍ଧ ବଳରେ ଆସେ ଧର୍ମଙ୍କ ଛାମୁର ।
ଦକ୍ଷିଣ କୋଶଳ ରାଜା ଭୂମନ୍ୟୁ ନୃପତି
ଦୁର୍ଯ୍ୟୋଧନ ରାଜାର ସେ ଶ୍ୱଶୁର ଅଟନ୍ତି ।
ଦକ୍ଷିଣ ରାଜାମାନଙ୍କୁ ଏକମେଳ କରି
ଆସନ୍ତେ ସେ ଦିଗେ ପଥେ ପଡ଼େ ହାଲହୁରି ।
ଅଷ୍ଟାଦଶ କ୍ଷୌଣୀ ନବଶତ ପାରିଦଣ୍ଡ
ଦୁର୍ଯ୍ୟୋଧନକୁ ଭେଟିଲା ଅର୍ଦ୍ଧ ଭୂମିଖଣ୍ଡ ।
ଜ୍ୟୋତିପୁର ରାଜାନାମ ଲକ୍ଷ୍ମଣ ନୃପତି
ପାଞ୍ଚକ୍ଷୌଣୀ ସୈନ୍ୟେ ମିଳେ ପାଣ୍ଡବଙ୍କ କତି

ନୈର୍ଋତେ ଦେଶର ରାଜାନାମ ନରମାଳି
ସାତକ୍ଷୌଣୀ ବଳ ଘେନି ହସ୍ତିନାରେ ମିଳି ।
କାମାକ୍ଷୀ ଦେଶର ରାଜା ନାମ କାମପାଳ
ତିନିକ୍ଷୌଣୀ ବଳେ ଧର୍ମ ସଙ୍ଗେ ହେଲା ମେଳ
ବିଶିକେଶନ ବୋଲିଣ ଚେଦୀଦେଶ ରାଜା
ସାତକ୍ଷୌଣୀ ବଳେ ଦୁର୍ଯ୍ୟୋଧନେ କଲା ପୂଜା
ମଙ୍ଗଳ ଦେଶର ବାମଦେବ ନୃପମଣି
କୁରୁବଳରେ ପ୍ରବେଶ ବୀର ଚୂଡ଼ାମଣି ।
ମାଧୁର୍ଯ୍ୟସେନ ତୈଲଙ୍ଗ ଦେଶର ସେ ରାଜା
ନବକ୍ଷୌଣୀ ବଳେ ଦୁର୍ଯ୍ୟୋଧନ କଲା ପୂଜା ।
ମଞ୍ଜୁଷା ଦେଶର ରାଜା ବୀରସେନ ବୀର
ଆଠକ୍ଷୌଣୀ ବଳେ ଚଳେ ହସ୍ତିନା ନଗର ।
ତ୍ରିହୁଡ଼ି ଦେଶର ରାଜା ତ୍ରି ଅୟକେଶ୍ୱର
ପାଞ୍ଚକ୍ଷୌଣୀ ସୈନ୍ୟେ ମିଳେ ଯୁଧିଷ୍ଠି ଛାମୁର
ନୀଳରାମ ବୋଲିକରି କବିରର ରାଜା
ଦ୍ୱିବିଂଶତି ଲକ୍ଷେ କଲା ଦୁର୍ଯ୍ୟୋଧନେ ପୂଜା ।
ମେହହିରଣ୍ୟର ରାଜା ସୌମ୍ୟ ଚକ୍ରବର୍ତ୍ତୀ
ବେନିକ୍ଷୌଣୀ ବଳେ କଲା ପାଣ୍ଡବରେ ପ୍ରୀତି
ଭାଟଦେଶର ଭୂପାଳ ବ୍ରହ୍ମବୋଲି ରାଜା
ଦଶସସ୍ର ବଳେ କଲା ଦୁର୍ଯ୍ୟୋଧନେ ପୂଜା ।
ମନ୍ଦାର ଦେଶର ରାଜା ନାମ ଇରାଇତ
ଯୁଧିଷ୍ଠି ଦର୍ଶନ କଲା ଘେନି ଲକ୍ଷପାଞ୍ଚ ।
ମହ୍ଲାର ଦେଶର ରାଜା ଚଉଧର୍ମ ବଂଶ
ସାତକ୍ଷୌଣୀ ବଳେ ଭେଟେ ଯାଇ କୁରୁଈଶ ।
ବେଲାଳ ଦେଶର ରାଜା ଦାରୁ ଚକ୍ରବର୍ତ୍ତୀ
ଷଡ଼କ୍ଷୌଣୀ ବଳେ ମିଳେ ଦୁର୍ଯ୍ୟୋଧନ କତି ।
ଲକ୍ଷଉର ଦେଶ ରାଜା ନାମ ତାର ନଳ
ଧର୍ମେ ଭେଟେ ସଙ୍ଗେ ଘେନି ପାଞ୍ଚକ୍ଷୌଣୀବଳ
ଖେଚର ରାଘବରାଜା ବୀର ଚକ୍ରବର୍ତ୍ତୀ
ଏକାଦଶ କ୍ଷୌଣୀତୁଲେ ହସ୍ତିନା ଗମନ୍ତି ।
କୁଞ୍ଜର ଦେଶର ରାଜା ଅଟଇ ଦୁର୍ଜନ
ପଞ୍ଚସାଗରେ ଭେଟଇ ରାଜା ଦୁର୍ଯ୍ୟୋଧନ ।
ସାମୁକିଦେଶ ବୋଲିଣ ବଡ଼ାଇ ଗରିଷ୍ଠ
ସାତକ୍ଷୌଣୀ ବଳେ ହେଲା ହସ୍ତିନା ପଇଠ ।
କୌଶିକ ଦେଶର ରାଜା ଶ୍ରୀକୃଷ୍ଣ କେଶବ
ତ୍ରିଅର୍ବୁଦ ଯୋଦ୍ଧା ଘେନି ଭେଟେ କଉରବ ।
କର୍ଣ୍ଣକୂଟ ଦେଶ ରାଜା ନାମ ସେତୁମାଳୀ
ବେନିକ୍ଷୌଣୀ ସୈନ୍ୟ ଘେନି ହସ୍ତିନାରେ ମିଳି ।
କନାଉଜ ଦେଶ ରାଜା ନାମ ନୃପମଲ୍ଲ
ଯୁଧିଷ୍ଠିଙ୍କୁ ଭେଟେ ଘେନି ତିନିକ୍ଷୌଣୀ ବଳ ।
ଛତ୍ରପୁର ଦେଶ ରାଜା ନାମ ଚନ୍ଦ୍ରନେମି
ପଞ୍ଚସାଗରେ ଧର୍ମଙ୍କୁ ହେଲା ପରଣାମି ।
ଗାନ୍ଧାର ଦେଶ ଶକୁନି ମନ୍ତ୍ରୀ ଚୂଡ଼ାମଣି
ଦୁର୍ଯ୍ୟୋଧନେ ଭେଟେ ଘେନି ଏକାଦଶକ୍ଷୌଣୀ
ପାରିଜାତକର ରାଜା ନାମ ନୀରାକୁଳ
ଯୁଧିଷ୍ଠିଙ୍କୁ ଭେଟେ ଘେନି ତିନିକ୍ଷୌଣୀ ବଳ ।
କରମଣ୍ଡଳର ରାଜା ରାୟ ଚକ୍ରବର୍ତ୍ତୀ
ତେରକ୍ଷୌଣୀ ବଳଘେନି ହସ୍ତିନା ଚଳନ୍ତି ।
ଭୂପାଳ ଦେଶର ରାଜା ନାମ ହନୁମନ୍ତ
ଯୁଧିଷ୍ଠି ଦର୍ଶନ କଲା ଘେନି ପଦ୍ମେ ରଥ ।
ବାରସ୍ୱତୀପୁର ରାଜା ନାମ ମହେଶ୍ୱର
ତିନିବୃନ୍ଦ ସୈନ୍ୟ ମିଶେ ଯୁଧିଷ୍ଠି ଥାଟର ।
ବୃନ୍ଦାର୍କ ଦେଶର ରାଜା ନାମ କର୍ଣ୍ଣଜିହ୍ୱ
ଦଶକ୍ଷୌଣୀ ସୈନ୍ୟ ଘେନି ଭେଟେ କଉରବ
ନୀଳାସେନ ବୋଲିକରି ବିନ୍ଧ୍ୟବର ରାଜା
ଦୁଇପଦ୍ମ ଥାଟେ କଲା ଯୁଧିଷ୍ଠିଙ୍କୁ ପୂଜା ।
ଶାଖାପୁର ଦେଶ ରାଜା ନାମ ବିନ୍ଦୁନାଭ
ପଞ୍ଚଷଠି ପଦ୍ମତୁଲେ ଭେଟେ କଉରବ ।
ଲାଖାମଣ୍ଡଳର ରାଜା ନାମ ପଦ୍ମନାଭ
ଏକକ୍ଷୌଣୀ ସୈନ୍ୟେ ଭେଟେ ଯୁଧିଷ୍ଠିର ଦେବ
ପାର୍ବଣି ଦେଶର ରାଜ ନାମ ବିତ୍ତପାଳ
ହସ୍ତିନା ଚଳେ ଏଗାରକ୍ଷୌଣୀ ଘେନି ବଳ ।
ଜ୍ୟୋତିପୁର ରାଜା ନାମ ବିଧୁରାଜସେନ
ପାଞ୍ଚକ୍ଷୌଣୀ ବଳେ ଭେଟେ ଯୁଧିଷ୍ଠି ରାଜନ ।
ଅଙ୍ଗଦେଶ ରାଜା ନାମ ଅଟଇ ଦରଦ
ପାଞ୍ଚକ୍ଷୌଣୀବଳେ ଭେଟେ ସେ ମାନଗୋବିନ୍ଦ
ଓଡ଼ିଶା ଦେଶର ରାଜା ନାମ ନରବଳି
ନବକ୍ଷୌଣୀ ବଳେ ଗଲା ହସ୍ତିନାକୁ ଚଳି ।
ଚୋର ମଣ୍ଡଳର ରାଜା ନାମ ଚେତସେନ
ତ୍ରିସାଗର ବଳେ କଲା ଯୁଧିଷ୍ଠି ଦର୍ଶନ ।
ଅନଳବାଦ ବୋଲିଣ ବେନିପୁର ରାଜା
ଅସଂଖ୍ୟ ସୈନ୍ୟେ କୌରବେ କଲା ଯାଇ ପୂଜା
ପାଞ୍ଚକ୍ଷୌଣୀ ସୈନ୍ୟ ଘେନି ନୃପ ସଉରାଷ୍ଟ୍ର
ମାନଗୋବିନ୍ଦଙ୍କୁ ଯାଇ କଲା ସେହୁ ଭେଟ ।
କାନପୁରନଗ୍ର ରାଜା ଶ୍ରୀବସନ୍ତ ସେନ
ତ୍ରିସାଗର ସୈନ୍ୟେ ଧର୍ମ କଲେ ଦରଶନ ।
ରଣପୁର ରାଜ୍ୟ ରାଜା ନାମ ବିରୁପାକ୍ଷ
ଷଡ଼କ୍ଷୌଣୀ ସୈନ୍ୟ ହେଲା ପାଣ୍ଡବଙ୍କ ପକ୍ଷ ।
ଆନନ୍ଦ ପୁରର ରାଜା ନାମ ଋତୁପର୍ଣ୍ଣ
ତ୍ରିଅର୍ବୁଦ ସୈନ୍ୟେ କରେ ଧର୍ମକୁ ଦର୍ଶନ ।

ନାରାୟଣ ପୁରରାଜା ବିକ୍ରମ କେଶରୀ
ଯୁଧିଷ୍ଠିଙ୍କୁ ଦେଖା କରେ କୋଟି ସୈନ୍ୟଧରି ।
ହିଡ଼ିମ୍ବବନର ଘଟୋତ୍କଚ ନରପତି
ସାତ ପରାର୍ଦ୍ଧ ସୈନ୍ୟରେ ଭେଟେ ଧର୍ମକତି ।
ଶିବପୁର ନରପତି ନାମ ମହୋଦର
ଲକ୍ଷେଯୋଦ୍ଧା ଘେନି ମିଶେ ଯୁଧିଷ୍ଠି ସଙ୍ଗର ।
ସୁବର୍ଣ୍ଣପୁର ନରେଶ ନାମ ଯୋଗେଶ୍ୱର
ତିନି ସାଗରେ ମିଳିଲା ହସ୍ତିନା ନବର ।
ଚକ୍ରପୁର ନରପତି ନାମ କଳିକାଳ
ଦୁର୍ଯ୍ୟୋଧନ ଭେଟେ ଘେନି ପାଞ୍ଚକ୍ଷୌଣୀ ବଳ
ଦ୍ରୁପଦ ବୋଲିଣ ଯେହୁ ପାଞ୍ଚାଳର ରାଜା
ପରାର୍ଦ୍ଧେ ରଥୀଙ୍କୁ ଘେନି ଧର୍ମେ କଲା ପୂଜା ।
ସିନ୍ଧୁଦେଶ ନରପତି ନାମ ଜୟଦ୍ରଥ
ଦୁର୍ଯ୍ୟୋଧନେ ଭେଟେ ନେଇ ଦଶସସ୍ର ରଥ ।
ମଘମତ୍ସ୍ୟଦେଶ ରାଜା ଅଟେ ଯେ ବିରାଟ
ସାତପଦ୍ମ ସୈନ୍ୟ ଘେନି ଧର୍ମେ ହେଲା ଭେଟ
ଶବର ଦେଶର ରାଜା ନାମରେ ଅଜର
ଏଗାର ଅର୍ବୁଦ ସୈନ୍ୟେ ଭେଟେ ଯୁଧିଷ୍ଠିର ।
ନୀଳେନ୍ଦ୍ରୀ ଦେଶର ରାଜା ନାମ ଦାମୋଦର
ସାଗରେ ସୈନ୍ୟ ଘେନିଣ ଭେଟେ ଯୁଧିଷ୍ଠିର ।
ବେଦପୁର ନରପତି ରକ ପଦ୍ମସେନ
ପାଞ୍ଚକ୍ଷୌଣୀ ବଳେ କଲା ଯୁଧିଷ୍ଠି ଦର୍ଶନ ।
ପିଙ୍ଗଳାପୁର ବୋଲିଣ ଏକଚକ୍ର ରାଜା
ନବସାଗରେ ଯୁଧିଷ୍ଠି ଦେବେ କଲା ପୂଜା ।
ଦୀକ୍ଷାପ୍ରତି ନଗ୍ର ରାଜା ଦକ୍ଷ ପ୍ରଜାପତି
ନବକ୍ଷୌଣୀ ବଳେ ଭେଟେ ଦୁର୍ଯ୍ୟୋଧନ କତି
ଅନୁବିଷପୁର ରାଜା ନରସିଂହ ସେନ
ପଞ୍ଚଷଠି କୋଟି ସୈନ୍ୟ ପାଣ୍ଡବେ ମିଳନ ।
କରବୀରପୁର ରାଜା ନାମ ମାରକଣ୍ଡେ
ଦୁର୍ଯ୍ୟୋଧନ ଭେଟେ ନବଶତ ପାରିଦଣ୍ଡେ ।
କନ୍ଧାଣ ଦେଶର ରାଜା ବାସୁଦେବ ରାୟେ
ତିନିଲକ୍ଷ ସୈନ୍ୟ ଧର୍ମ ଦେବେ ଭେଟିଦିଏ ।
ବ୍ରହ୍ମଦଣ୍ଡ ଦେଶ ରାଜା ନାମ ବ୍ରହ୍ମସେନ
ପାଞ୍ଚଲକ୍ଷ ସୈନ୍ୟେ ଧର୍ମ କଲା ଦରଶନ ।
ସିଂହତୁରଗର ରାଜା ନାମ ଦୁର୍ବାଦଳ
ହସ୍ତିନାକୁ ଗଲା ଘେନି ନବକ୍ଷୌଣୀ ବଳ ।
ସାଳୀଞ୍ଚଦେଶେ ମନ୍ଦର ପର୍ବତର ତଳେ
ଦୁର୍ଯ୍ୟୋଧନଙ୍କୁ ଦର୍ଶନ କରିଲେ ଭୂପାଳେ ।
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଏହି ଚାରିଜାତି
ଦୈତ୍ୟ ଦାନବ ପିଶାଚ ଅସୁର ନୃପତି ।

ଲବ୍‌ଧକ କନ୍ଧ ମହ୍ଲାର ଗଣ୍ଡ ମହାରାଷ୍ଟ୍ର
ତୈଲଙ୍ଗ ତିହୁଡ଼ି ବଂଶ ସମରେ ପ୍ରବିଷ୍ଟ ।
ବଦନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସର୍ବଦିଗ ରାଜାମାନେ କଲେ ଆଗମନ ।
ଏ ବିଧିରେ ଅଷ୍ଟାଦଶ ବଂଶ ନରପତି
ଦୁଇକୁଳ ଆବୋରିଲେ ଯା ସଙ୍ଗେ ଯା ପ୍ରୀତି ।
କର୍ଣ୍ଣାଟ ବଙ୍ଗ ତେଲଙ୍ଗ ଦିହୁଡ଼ି ମନ୍ଦାର
ସସୈନ୍ୟେ ଆସନ୍ତି ରାଜା ଅନେକ ଦେଶର ।
ଗୌଡ଼ ମର୍ଦ୍ଦନ ତିହୁଡ଼ି ଭୋଟାହ ମହ୍ଲାର
କାମାକ୍ଷୀ ବଙ୍ଗଳା ଆଉ ବେଲାବଳି ପୁର ।
କ୍ଷୀର ଗାଳବ ଗୁଞ୍ଜାର ପୁଣିହିଁ ସୌରାଷ୍ଟ୍ର
କାଶୀ କଉଶିକ କୁବ୍‌ଜ ଆଉ ମହାରାଷ୍ଟ୍ର ।
ଛତ୍ର ବିଛତ୍ର କୋଶଳପୁର ବାରସ୍ୱତି
ନେପାଳ ଅରବିନ୍ଦ ଯେ ରାଜା ଗୌଡ଼ ଇତି ।
ଏ ବିଧିରେ ଚାରିଉଣା ଲକ୍ଷେକ ରାଜନ
ପଶ୍ଚିମେ ପଞ୍ଚସହସ୍ର କଲେ ଆଗମନ ।
ଉତ୍ତରୁ ଚାରିଶସସ୍ର ତହୁଁ ଉଣା ଏକ
ପୂର୍ବରୁ ତିନିସହସ୍ର ନୃପତି ନାୟକ ।
ଦକ୍ଷିଣରୁ ଏକ ଉଣା ଚାରିସସ୍ର ଜାଣ
ଏହିରୂପେ ଲକ୍ଷେରାଜା ଧାତାର ନିର୍ମାଣ ।
ପଶ୍ଚିମରୁ ନ ଆସିଲା ରାଜା ମୃଗସେନ
ଉତ୍ତରୁ ନ ଆସେ ଜଗମୋହନ ରାଜନ ।
କପାଳସିଂହ ରାଜନ ପୂର୍ବରୁ ନ ଆସି
ଦକ୍ଷିଣୁ ନଇଲା ଋତୁପର୍ଣ୍ଣ ସୂର୍ଯ୍ୟବଂଶୀ ।
ଆଦ୍ୟରୁ ଲକ୍ଷକୁ ଚାରି ଉଣା ରାଜା ଥିଲେ
ଏବେ ଆଠଉଣା ଲକ୍ଷେ ସମରେ ପଶିଲେ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଜଇନ୍ତା
ହସ୍ତିନା ମାଡ଼ି ରହିଲେ ସୈନ୍ୟ ଅକଳନ୍ତା ।
ଦେବଙ୍କୁ ଦୁର୍ଲ୍ଲଭ ଅଟେ ନରେ ଅଗୋଚର
ଦେଖି ଅନ୍ତ କରିବାକୁ ସମର୍ଥ କାହାର ।
କୃପାନଳର ନନ୍ଦିନୀ ଦେବୀ ଶତଶ୍ରୀୟା
କମଳର ମାଳ ହୋଇ ରହୁ ମୋର ହିୟା ।
କେନାବଳି ପାଟଣାରେ ଯେ କନକାବତୀ
ଚନ୍ଦ୍ରଭାଗା ମହାତୀର୍ଥ ଅପୋଡ଼ା ସେ ପୃଥ୍ୱୀ ।
ଗୋପନେ ପ୍ରସନ୍ନ ହେଲୁ କିରାତର ପ୍ରତି
ନାମ ସଙ୍କେତ ଶାରଳା ସିଦ୍ଧ ଚଣ୍ଡୀମୂର୍ତ୍ତି ।
ନବକୋଟି ମୁଦ୍ରା ଯେଉଁ ଦେବୀଙ୍କର ସିଦ୍ଧି
ଜ୍ଞାନଦାୟୀ ମାହେଶ୍ୱରୀ ସର୍ବଜନ ବୋଧି ।
କୋଟିଏ ତୀର୍ଥ ଘେନିଣ ନୃପତି ପୁଷ୍କର
ସର୍ବଦା ସିଦ୍ଧ କରଇ ତୋହର ପୟର ।

ପରଲୋକ ବାନ୍ଧବୀ ଗୋ ଦେବୀ କାଳରାତ୍ରି
ଅଳ୍ପ ଭକ୍ତିରେ ଅଭୟ ହେଉ ବରଦାତ୍ରୀ ।
ମୋହର କି ବୁଦ୍ଧି ଅଛି ଲେଖିବାକୁ ଗ୍ରନ୍ଥ
ତୁହି ବାକ୍ୟଦେବୀ ଜ୍ଞାନ କରାଅ ବ୍ୟକତ ।
ନୀଳଇନ୍ଦୀବର ତୁଚ୍ଛ କରେ ଯା ମୁଖଟି
ନୀଳ କଳ୍ପବଟ ତଳେ ପାଇଲଇଁ ଭେଟି ।
ଶ୍ରୀଚଣ୍ଡୀ ଶାରଳା ପାଦେ ସଦା ଦେଇ ଚିତ୍ତ
କହଇ ଶାରଳାଦାସ ଭାରତ ଚରିତ ।

■ ■ ■■

## କୁରୁ ପାଣ୍ଡବଙ୍କର ସୈନ୍ୟ ସଂଖ୍ୟା, ଶ୍ରୀକୃଷ୍ଣଙ୍କ ଦ୍ୱାରା ବେଲାଳସେନ ମସ୍ତକ ଛେଦନ ଓ ଶୁଭସ୍ତମ୍ଭ ସ୍ଥାପନ ଏବଂ ପାଣ୍ଡବଙ୍କର ଛିନ୍ନତା

ପଚାରନ୍ତି ଅଗସ୍ତିଙ୍କି ମନୁ ନୃପବର
କହ ଏଥୁଅନ୍ତେ ହେଲା କିସ ସମାଚାର ।
କହନ୍ତି ଅଗସ୍ତି ମୁନି ଶୁଣ ରାଜା ଏବେ
ପୁଣି ଯେଉଁ କଥା ହେଲା ଉଦଯୋଗ ପର୍ବେ ।
ଯୁଧିଷ୍ଠିର ପଚାରିଲେ ସହଦେବ ଚାହିଁ
କହ କାର କେତେସୈନ୍ୟ ହେଲେଠୁଳ ହୋଇ
ଶୁଣି ସହଦେବ ଧର୍ମ ଅଗ୍ରତେ କହିଲା
ଶୁଣ କହୁଅଛି ଯାର ଯେତେକ ହୋଇଲା ।
ସତୁରି ସସ୍ର ନୃପଙ୍କୁ ହେଲେ ଚାରି ନ୍ୟୁନ
ଏତେ ରାଜା ପାଇଅଛି ଜାଣ ଦୁର୍ଯୋଧନ ।
ପୁଣ ସୈନ୍ୟ ଯେତେ ତାର ଶୁଣ ଧର୍ମରାୟ
ଦ୍ରୋଣଗୁରୁ କର୍ଣ୍ଣବୀର ଶଲ୍ୟ ଯେ ଗାଙ୍ଗେୟ ।
ଭୂରିଶ୍ରବା ଜୟଦ୍ରଥ ପୁଣି କୃପବ୍ରହ୍ମା
ଶଲ୍ୟ ବିକର୍ଣ୍ଣ ଆବର ବୀର ଅଶ୍ୱତ୍ଥାମା ।
ଶକୁନି ବିଶିକେଶନ ଆଉ ସୋମଦତ୍ତ
ଅଲମ୍ଭୁଷ ଅଳାୟୁଧ ସଙ୍ଗରେ ତ୍ରିଗର୍ତ୍ତ ।
ଦକ୍ଷ ରକ୍ଷ ଭାଇ ବେନି ସଙ୍ଗରେ ଅଛନ୍ତି
ଏହିପରି ସେନାବୀର କରିଛନ୍ତି ସ୍ଥିତି ।
ନବତି ପରାର୍ଦ୍ଧ ଅଶ୍ୱ ହୋଇଲା ତାଙ୍କର
ସତୁରି ସାଗର ସଂଖ୍ୟା ହୋଇଲା କୁଞ୍ଜର ।
ଅଶୀବୃନ୍ଦ ରଥୀ ହେଲେ ଶୁଣ ନୃପମଣି
ପଦାତି ହୋଇଲେ ବାରଶତ ଅକ୍ଷୌହିଣୀ ।
ଚାରିଶ କ୍ଷଉଣୀ ଛନ୍ତି ତାର ସେନାପତି
ଛତ୍ର ଚାମର ତାହାର କେ କରେ ଗଣତି ।
ରଥୀମାନେ ରହିଛନ୍ତି ଦଶ ଅରବୁଦ
ରଖିଛନ୍ତି ସଙ୍ଗତରେ ନାନଜାତି ବାଦ୍ୟ ।

ଅଶୀକୋଟି ପରିମାଣ ହୋଇଅଛି ବାନା
ଚିରାଳମାନଙ୍କ ସଂଖ୍ୟା କେ କରେ ଗଣନା ।
ଶ୍ୱେତ ଚାମର ଚାଳିଶବୃନ୍ଦ ତାର ଜାଣ
ଦୁର୍ଯୋଧନ ସୈନ୍ୟ ସଂଖ୍ୟା ନାହିଁ ପରିମାଣ
ମାଳବ ଦେଶର ରାଜା ନାମ କୃପବର୍ମା
ତାର ଏକ ହସ୍ତୀ ନାମ ଅଟେ ଅଶ୍ୱତ୍ଥାମା ।
ସେହି ହସ୍ତୀ ବାରଯୁଣ ଘଣ୍ଟା ବାରଯୁଣ
ଯୁଧିଷ୍ଠିର ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଣ ।
ସହଦେବର ମୁଖକୁ ଚାହିଁଲେ ତରାଟି
ବୋଇଲେ କହିଲୁ କେଡ଼େ ମିଛକଥା ଗୋଟି ।
ରଣ ଭୂଇଁରେ ରହିବେ ଯେବେ ସେହି ହାତୀ
ଆବର ସୈନ୍ୟ ପଦାତି ଥିବେ ଯେଉଁ କତି ।
ଧର୍ମଙ୍କ ବଚନ ଶୁଣି କହେ ମନ୍ତ୍ରୀବର
ସେ ହସ୍ତୀ ବିଷୟ ଦେବ ମିଛ ଜ୍ଞାନ କର ।
ଆହେ ଦେବ ଏକମନେ ଶୁଣ ତା ପ୍ରମାଣ
ମାନବ ହସ୍ତରେ ସେହୁ ଅଟେ ସାତଯୁଣ ।
ଦେବତାଙ୍କୁ ବ୍ରହ୍ମଯୁଣ ଅଟେ ପୁଣି ସାତ
ଏବେ ପରିମାଣ ବୁଝ ହୋଇଲା କେମନ୍ତ ।
ହସ୍ତୀର ଗଳାରେ ଘଣ୍ଟି ଅଛି ନବଯୁଣ
ଦେବତା ଯୁଣରେ ହସ୍ତୀ ହୋଇଛି ପ୍ରମାଣ ।
ବ୍ରହ୍ମା ଯୁଣରେ ହୋଇଛି କୁରୁକ୍ଷେତ୍ର ଭୂଇଁ
ସହଦେବଙ୍କର ବାକ୍ୟେ ତୁଷ୍ଟ ଧର୍ମସାଇଁ ।
ପୁଣି ପଚାରିଲେ କହ ଆମ୍ଭ ସୈନ୍ୟ କେତେ
ତେବେ ଯାଇ ମୋର ମନ ହୋଇବ ପରତେ
ଯୁଧିଷ୍ଠିରଙ୍କ ବଚନେ କହେ ମନ୍ତ୍ରୀ ପୁଣ
ଶୁଣ ଦେବ ଆମ୍ଭ ସୈନ୍ୟମାନଙ୍କ ପ୍ରମାଣ ।
ମାନଗୋବିନ୍ଦର ଯେତେ ସୈନ୍ୟବଳ ଛନ୍ତି
ପୁଣି ଶତ ସହୋଦର ସେମାନେ ଅଟନ୍ତି ।
ଆମ୍ଭ ସୈନ୍ୟବଳ କଥା ଶୁଣ ନୃପବର
ଆମ୍ଭେମାନେ ଅଟୁ ମାତ୍ର ପାଞ୍ଚ ସହୋଦର ।
ଧୃଷ୍ଟଦ୍ୟୁମନ ଆମ୍ଭର ଅଟେ ସେନାପତି
ବିରାଟ ଦ୍ରୁପଦ ଏହୁ ପ୍ରବଳ ନୃପତି ।
ଅଭିମନ୍ୟୁ ଘଟୋତ୍କଚ ପୁଣିହିଁ ଉତ୍ତର
ଶ୍ୱେତ ଶଙ୍ଖ ଘଟୁକାଦି ଅଛନ୍ତି ଆମ୍ଭର ।
ସାତ୍ୟକି ଶିଖଣ୍ଡୀ ସହ ଦଶ ସେନାପତି
ପୁଣି ତିରିଶ ସହସ୍ର ଅଛନ୍ତି ନୃପତି ।
ପଚିଶ ପରାର୍ଦ୍ଧ ହେଲେ ଘୋଡ଼ା ପରମାଣ
ଅଠର ପରାର୍ଦ୍ଧ ରଥୀ ଗଣନାରେ ଜାଣ ।
ତିନିବୃନ୍ଦ ପରମାଣ ମହାରଥୀ ହେଲେ
ଚାରିଶତ ଅକ୍ଷୌହିଣୀ ପଦାତି ହୋଇଲେ ।

ଏହିକ୍ଷଣି ଗଣନାରେ ହୋଇଲେ ଯେସନ
ବାଦ୍ୟକାରଙ୍କର ସଂଖ୍ୟା ଅଟେ ଅଗଣନ ।
ଦଶକୋଟି ପାଞ୍ଚଲକ୍ଷ ହୋଇଲେ ପ୍ରମାଣ
ଶ୍ୱେତ ଚାମର ଗଣନ୍ତେ ପରାର୍ଦ୍ଧେକ ଜାଣ ।
ସଂଖ୍ୟାରେ ଏତେକ ସୈନ୍ୟ ହୋଇଲେ ଆମ୍ଭର
ଶୁଣି ବିଷାଦିତ ହେଲେ ଧର୍ମ ନୃପବର ।
ମାନଗୋବିନ୍ଦ ସପକ୍ଷ ଛନ୍ତି ସପ୍ତରଥୀ
ଆହୁରି ଛନ୍ତି ସତୁରି ସହସ୍ର ନୃପତି ।
କେମନ୍ତେ ଜିଣିବା ତାର ଅକଳିତ ବଳ
ଶୁଣି ସହଦେବ ବୋଲେ କିପାଁ ଦେବ ଭାଳ ।
ଅଛି ଆମ୍ଭମାନଙ୍କର ଗୋଟିଏ କ୍ଷତ୍ରିୟ
କ୍ଷଣକରେ ଜିଣିବ ସେ କରିଦେଇ କ୍ଷୟ ।
ସହଦେବ ବାକ୍ୟ ଶୁଣି ଧର୍ମ ଯୁଧିଷ୍ଠିର
ବୋଇଲେ ସେ କାହିଁ ଅଛି କି ନାମ ତାହାର ।
ମନ୍ତ୍ରୀବର ବୋଲେ ତହୁଁ ଶୁଣ ମହୀପାଳ
ଦୁର୍ଯ୍ୟୋଧନ ଦେଲା ଯେବେ ଭୀମକୁ ଗରଳ
ବିଷଖାଇ ଭୀମସେନ ହେଲେ ଅଚେତନ
ମଲା ବୋଲି ବିଚାରିଲା ରାଜା ଦୁର୍ଯ୍ୟୋଧନ
ଦୁର୍ମନ ଦୁଃଶାସନକୁ ନିକଟକୁ ରାଇ
ଗୁପତେ ବୋଇଲା ଭୀମ ମରିଗଲା ଭାଇ ।
ଦକ୍ଷିଣକୁ ମୁଣ୍ଡକରି ବେଗେ ଘେନିଯାଅ
ଯମୁନା ନଦୀରେ ତାକୁ ବେଗେ ଫିଙ୍ଗିଦିଅ ।
ଦୁର୍ଯ୍ୟୋଧନର ଆଦେଶେ ସେହି ଦୁଇଭାଇ
ଯମୁନା ନଦୀରେ ବେଗେ ଫିଙ୍ଗିଦେଲେ ନେଇ
ଲେଉଟି ଦୁର୍ଯ୍ୟୋଧନକୁ ଜଣାଇଲେ ଯାଇ
ଅଇଲୁ ଭୀମକୁ ଏବେ ଜଳରେ ଭସାଇ ।
ତାହାଶୁଣି ଦୁର୍ଯ୍ୟୋଧନ ହୋଇଲା ସନ୍ତୋଷ
ବୋଇଲା କାହାର ଆଗେ ନ କର ପ୍ରକାଶ ।
ପୁଣି ଯାହା ହେଲା ଶୁଣ ଏଥୁ ଅନନ୍ତରେ
ଦଶଘଡ଼ି ରାତ୍ରେ ଭୀମ ପଡ଼ିଲେ ଜଳରେ ।
ସେକାଳେ ଜଳରେ ଥିଲା ଗୋଟିଏ ନାଗୁଣୀ
ବେଲାବଳୀ ନାମ ତାର ଅନନ୍ତ ଦୁଲଣୀ ।
ପାତାଳରୁ ଆସିଥିଲା ଜଳକ୍ରୀଡ଼ା ପାଇଁ
ଏମନ୍ତ କାଳେ ଭୀମକୁ ଭେଟିଲାକ ଯାଇ ।
ସୁକୁମାର ସୁପୁରୁଷ ଯହୁଁ ସେ ଦେଖିଲା
ସ୍ନେହଭରେ ପାତାଳକୁ ତହୁଁ ଘେନିଗଲା ।
ବାସୁକୀ ଆଗରେ ତାକୁ ଥୋଇଲାକ ନେଇ
ଦେଖି ନାଗରାଜା ମନେ ଆନନ୍ଦିତ ହୋଇ ।
ଯୋଗବଳରେ ଜାଣିଲା ବିଷୟ ସମସ୍ତ
ଭୀମସେନଙ୍କ ମୁଖରେ ଦେଲା ସେ ଅମୃତ ।
ପୁନର୍ଜୀବିତ ହୋଇଲା ତହୁଁ ଭୀମସେନ
ନାଗରାଜା ବେଲାବଳୀ କରିଲା ପ୍ରଦାନ ।
ଅତି ସୁଖରେ ରହିଲେ ତହିଁ ମହାବଳ
ବେଲାବଳୀ ସଙ୍ଗେ ପ୍ରୀତି ହୁଅନ୍ତେ ପ୍ରବଳ ।
ଏହିରୂପେ କିଛିଦିନ ବହିଗଲା ତହୁଁ
ପାଣ୍ଡବାସୁର କୁରୁଙ୍କୁ ଆକର୍ଷିଲା ଯହୁଁ ।
ସେକାଳେ ଆପଣ ତାକୁ କରନ୍ତେ ଚିନ୍ତନ
ପାତାଳେ ଥାଇ ଜାଣିଲେ ଭାଇ ଭୀମସେନ ।
ବେଲାବଳୀକୁ ପ୍ରବୋଧ କରିଣ ବହୁତ
ପ୍ରବେଶ ହୋଇଲେ ତୁମ୍ଭ ନିକଟେ ତ୍ୱରିତ ।
ତହୁଁ ପାଣ୍ଡବାସୁରକୁ ବଧ କଲେ ଯାଇ
ଜୀବନ ପାଇଲେ ତେଣୁ ସେହି ଶତଭାଇ ।
ଭୀମସେନ ଆସିଲେ ଯେ ଦିନ ତାକୁ ଛାଡ଼ି
ଦୁଇମାସ ଋତୁ ତାର ଯାଇଥିଲା ଗଡ଼ି ।
ଭୀମସେନ ବୋଇଲେ ଗୋ ଶୁଣ ପ୍ରାଣସଖି
ମୋହର କଥା ଗୋଟିକୁ ମନେ ଥିବୁ ରଖି ।
ତୋର ନାମ ମୋର ନାମ ଦୁଇକି ମିଶାଇ
ଯେଉଁ ପୁତ୍ର ହେବ ତାର ନାମ ଦେବୁ ସେହି ।
ଆଉ ତୁ ମନ ମଧ୍ୟରେ ଭାବନା ନ କର
କାର୍ଯ୍ୟ ଶେଷରେ ଆସିବି ମୁହିଁ ପୁନର୍ବାର ।
ଏମନ୍ତ ବୁଝାଇ କହି ଆସିଲେ ବହନ
କେତେ ଦିନାନ୍ତରେ ପୁତ୍ର ହେଲା ଉତପନ୍ନ ।
ପୁତ୍ରମୁଖ ଦେଖି ବାଳୀ ହରଷ ହୋଇଲା
ବେଲାଳସେନ ବୋଲିଣ ତାର ନାମ ଦେଲା
ନାଗରାଜା ପ୍ରସାଦରେ ସେହୁ ବଳବନ୍ତ
ଆସିଲେ ଜିଣିବ ଏକା ସର୍ବ କୌରବନ୍ତ ।
ସହଦେବଠାରୁ ଶୁଣି ଧର୍ମ ଯୁଧିଷ୍ଠିର
ମନ ମଧ୍ୟରେ ଆନନ୍ଦ ହୋଇଲେ ଅପାର ।
ପୁଣିହିଁ ବୋଇଲେ ତୁହି କହ ସହଦେବ
ପାତାଳ ପୁରରୁ ପୁତ୍ର କେମନ୍ତେ ଆସିବ ।
ତାହା ଶୁଣି ସହଦେବ କରଇ ଉତ୍ତର
ଭୀମ ଚିନ୍ତିଲେ ନିଶ୍ଚୟ ଆସିବ କୁମର ।
ଭୀମସେନକୁ ଅଣାଇ ବୋଇଲେ ବଚନ
ତୋ ପୁତ୍ର ବେଲାଳସେନ ଆଣ ହେ ବହନ ।
ଯୁଧିଷ୍ଠିଙ୍କ ଆଜ୍ଞା ପାଇ ବୀର ବୃକୋଦର
ମନରେ କରିଲେ ଧ୍ୟାନ ଆପଣା କୁମର ।
ପାତାଳପୁରେ ପୁତ୍ରର କମ୍ପିଲା ଆସନ
ଜାଣି ପାରିଣ କୁମର ଉଠିଲା ବହନ ।
ତାହା ଦେଖି ବେଲାବଳୀ ବସାଏ କୋଳରେ
ବେନି ନୟନରୁ ଅଶ୍ରୁ ଝର ଝର ଝରେ ।

ଶୋକ ଆକୁଳିତେ ସେହୁ ବୋଲଇ ବଚନ
କେଉଁପାପେ ଜାତ କଲି ତୋତେରେ ନନ୍ଦନ ।
କାଳେ ଦେଖି ନ ପାରିଲି ସୁଖକୁ ତୋହରି
ପୋଡୁ ପୋଡୁ ପୋଡ଼ା କର୍ମ କଷଣ ମୋହରି
ମାତାର ବ୍ୟାକୁଳ ଦେଖି ପୁଚ୍ଛଇ କୁମର
କାହିଁପାଇଁ ମାତା ତୁ ଗୋ ହେଉଛୁ ଅଧୀର ।
ଏଥିର କାରଣ ମୋତେ କହ ତୁ ବୁଝାଇ
କେଉଁ ଅବିଗୁଣ ଆଜି ଦେଖିଲୁ କି ତୁହି ।
ତାହା ଶୁଣି ବେଲାବଳୀ କହଇ ଉତ୍ତର
ଶୁଣ ତେବେ ବାବୁ ମୋର ଯଥାର୍ଥ ଯେ ଗିର ।
କୌରବ ପାଣ୍ଡବ ଦୁହେଁ ଏକ ସହୋଦର
ଭାଇ ଭାଇ ବିବାଦରେ ହୋଇବ ସମର ।
କଉରବ ପକ୍ଷେ ହେଲେ ବହୁତ ସଇନ୍ୟ
ପାଣ୍ଡବମାନଙ୍କର ଯେ ଅଶେଷ ନିଉନ ।
ତେଣୁ ତୋର ପିତାତୋତେ କରେ ସୁମରଣା
ଏ ଯୋଗେ ବାବୁରେ ମୋର ବୁଦ୍ଧିହୁଏ ବଣା ।
ଯେବେ ଯିବୁ ଆଉ ତୁହି ନ ଆସିବୁ ଫେରି
ତେଣୁ ବ୍ୟାକୁଳ ହୃଦୟ ହେଉଛି ମୋହରି ।
ମାତା ମୁଖରୁ ଏମନ୍ତ ବାକ୍ୟମାନ ଶୁଣି
ପୁନଃ ପୁନଃ ପୁଚ୍ଛା କଲେ ସେ କୁମରମଣି ।
କହ କହ ମାତା ତୁହି ମୋତେ ତଥ୍ୟ କଥା
କେବଣ ମହାତ୍ମ୍ୟ ମୋର ଅଟେ ନିଜ ପିତା ।
ଶୁଣି ବେଲାବଳୀ କହେ ଶୁଣରେ କୁମର
ପାଣ୍ଡବ ଜାତ ହୋଇଲେ ଆସି ମଧପୁର ।
ପଣ୍ଡୁଧୃତରାଷ୍ଟ୍ର ନାମେ ଥିଲେ ଦୁଇ ଭାଇ
ସୋମବଂଶରୁ ସମ୍ଭୂତ ଅଟନ୍ତି ଯେ ସେହି ।
ପଣ୍ଡୁଙ୍କର ଦୁଇ ଭାର୍ଯ୍ୟା କୁନ୍ତୀ ମାଦ୍ରୀ ନାମ୍ନୀ
ଏ ଦୁହିଙ୍କଠାରୁ ପୁତ୍ର ଅଛନ୍ତି ଯେ ଜନ୍ମି ।
ଦେବ ଅଂଶରୁ ସେମାନେ ହେଲେ ଅବତାର
ଧର୍ମ ଔରସରୁ ଜାତ ହେଲେ ଯୁଧିଷ୍ଠିର ।
ପବନ ଅଂଶରୁ ଜାତ ହେଲେ ଭୀମସେନ
ଇନ୍ଦ୍ର ଔରସୁ ସମ୍ଭୂତ ହୋଇଲେ ଅର୍ଜ୍ଜୁନ ।
ଅଶ୍ୱିନୀକୁମାର ଠାରୁ ଜନ୍ମିଲେ ନକୁଳ
ସହଦେବ ପଣ୍ଡୁ ବୀର୍ଯ୍ୟୁ ହୋଇଲେ କେବଳ ।
ଧର୍ମନନ୍ଦନ ଅଟନ୍ତି ଯୁଧିଷ୍ଠି ନୃପତି
ନିରଞ୍ଜନ ବୋଲି ପାଦେ ଖଟନ୍ତି ଶ୍ରୀପତି ।
ଏବେ କହୁଅଛି ଶୁଣ କଉରବ ରୀତି
ଧୃତରାଷ୍ଟ୍ର ଭାର୍ଯ୍ୟା ଅଟେ ଗାନ୍ଧାରୀ ଯୁବତୀ ।
ବିଧବା ଉଆଁସୀ କନ୍ୟା ଅଟଇ ସେହୁ ତ
ଦୁର୍ବାସା ବରରେ ଶତ ପୁତ୍ର କଲା ଜାତ ।

ମଧୁପିଙ୍ଗଳ ଅଟଇ ସେ ମାନଗୋବିନ୍ଦ
ଅକାରଣେ ପାଣ୍ଡବଙ୍କୁ ଦେଲା ସେ ପ୍ରମାଦ ।
ଭୀମସେନକୁ ପ୍ରଥମେ ବିଷଲଡୁ ଦେଲା
ଅର୍ଦ୍ଧ ରାତ୍ରେ ଯମୁନାରେ ନେଇ ପକାଇଲା ।
କ୍ରୀଡ଼ା କରିବାକୁ ତହିଁ ମୁହିଁ ଯାଇଥିଲି
ଭୀମକୁ ଦେଖି ସେଠାରୁ ବହି ମୁଁ ଆଣିଲି ।
ତୋର ଅଜାପାଶେ ତାକୁ ନେଇ ଦେଲି ଥୋଇ
ତାହାକୁ ବଞ୍ଚାଇ ମୋତେ ସମର୍ପିଲେ ନେଇ ।
ବେନିମାସ ଗର୍ଭେ ତୁହି ଥିଲୁରେ କୁମର
ମୋତେ ତେଜି ତୋର ପିତା ଗଲେ ମଧପୁର
ଯିବାବେଳେ କହିଗଲେ ଏହି କଥା ସାର
ପୁତ୍ର ହେଲେ ନାମଦେବୁ ତୋହର ମୋହର ।
ତୋର ନାମ ଦେଲି ତେଣୁ ମୁଁ ବେଲାଳସେନ
ତୋର ନିଜ ପିତା ଅଟେ ଜାଣ ଭୀମସେନ ।
ସେଥିପାଇଁ ସୁମରଣା କଲେ ତୋ ପିଅର
କୌରବ ପାଣ୍ଡବଙ୍କର ହୋଇବ ସମର ।
ମାତାଠାରୁ ଏହିପରି କଥାମାନ ଶୁଣି
କୋପରେ ବେଲାଳସେନ ଉଠେ ଶିରଝୁଣି ।
ନିଶ୍ଚୟ ଯିବଇଁ ମାତା ସେହି ମଧପୁର
ଦେଖିବି ମାତା ଖୁଡୁତା ଜେଡୁତାଙ୍କୁ ମୋର ।
ଯଦି ଅବା ପ୍ରାଣ ତହିଁ ହରାଏ ସମରେ
ଜୀବନ ସଫଳ ହେବ ବସିବି ସ୍ୱର୍ଗରେ ।
ନେତ୍ରରେ ଦେଖିବି ମୁହିଁ ଭାରତ ସମର
ଶରୀର ଦୁରିତ ସବୁ ହୋଇଯିବ ଦୂର ।
ଏଥିପାଇଁକି ମାତା ଗୋ ନ କର ତୁ ଶୋକ
ଜନମ ଲଭିଲେ ନିଶ୍ଚେ ମରିଯାଏ ଲୋକ ।
ଏମନ୍ତ କହି କୁମର ଚଳିଲା ସତ୍ୱରେ
ପ୍ରବେଶ ହୋଇଲା ଯାଇ ମଧ ଭୁବନରେ ।
ବେଗ ବେଗ ହୋଇ ତହିଁ କରଇ ଗମନ
ଉପସ୍ଥିତ ହେଲା ଯହିଁ ଛନ୍ତି ଭୀମସେନ ।
ତାଙ୍କୁ ପଚାରେ କୁମର ମୁଖକୁ ଅନାଇଁ
ମୋର ପିତା ଭୀମସେନ ଛନ୍ତି କେଉଁଠାଇଁ ।
ବେଲାଳସେନ ବୋଲିଣ ଅଟେ ମୋର ନାମ
ବେଲାବଳୀ ଗର୍ଭରୁ ମୁଁ ହୋଇଛି ଜନମ ।
କେଉଁ କାର୍ଯ୍ୟ ପାଇଁ ପିତା କରିଲେ ସ୍ମରଣ
ତାହାଙ୍କୁ ଭେଟାଇ ଦିଅ ଦୟା ପ୍ରକାଶିଣ ।
ଭୀମସେନ ତାହାଠାରୁ ଶୁଣି ଏ ବଚନ
ଦଉଡ଼ି ଯାଇ ପୁତ୍ରକୁ କଲା ଆଲିଙ୍ଗନ ।
କୋଳେ ବସାଇ ମୁଖରେ ଚୁମ୍ବନ ବିହିଲା
ମୁହିଁ ତୋର ପିତାବୋଲି ବଚନ ଭାଷିଲା ।

ଏହାଶୁଣି ପୁତ୍ରମଣି ହୋଇ ଆନନ୍ଦିତ
ଭୀମସେନ ପାଦତଳେ ହେଲା ପ୍ରଣିପାତ ।
ଶତବାର ପ୍ରଣିପାତ ହୋଇଲା ପାଦରେ
ଭୀମସେନ ଆଶୀର୍ବାଦ କରିଲେ ସ୍ନେହରେ ।
ତହୁଁ ପୁତ୍ର ହାତ ଧରି ସେଠାରୁ ଚଳିଲେ
ଯୁଧିଷ୍ଠିର ପାଦତଳେ ନେଇ ପକାଇଲେ ।
ବୋଇଲେ ଭୋ ଦେବ ମୋର ଏହିଟି କୁମର
ବେଲାଳସେନ ବୋଲିଣ ନାମଟି ଏହାର ।
ଶୁଣି ଧର୍ମଙ୍କ ନନ୍ଦନ ଆନନ୍ଦିତ ହୋଇ
ସ୍ନେହ ଗଦଗଦେ କୋଳେ ବସାଇଲେ ନେଇ ।
ମୁଖରେ ଚୁମ୍ବନ ଦେଇ ବୋଇଲେ ବଚନ
ବର୍ତ୍ତମାନ କଷ୍ଟ ମୋର ଶୁଣରେ ନନ୍ଦନ ।
ଦୁର୍ଯ୍ୟୋଧନ ଭାଇ ଭାଗ ଆମ୍ଭଙ୍କୁ ନ ଦେଇ
ଆମ୍ଭର ସଙ୍ଗେ ସମର କରିବା ଇଚ୍ଛଇ ।
ଅତ୍ୟନ୍ତ ଦୁଷ୍ଟ ପ୍ରକୃତି ଅଟଇ ଯେ ସେହି
ଶକୁନିମନ୍ତ୍ରୀ ବୋଲିଣ ତାହାର ଯେ ତହିଁ ।
ସେହି ପାପିଷ୍ଠ ନିମନ୍ତେ ଏମନ୍ତ ଘଟିଲା
ଏକ ସହୋଦର ମଧ୍ୟେ ବାଦ ଜନ୍ମାଇଲା ।
ମୋହର ଭୟ କାରଣ ଶୁଣରେ କୁମର
ଅଗଣିତ ସୈନ୍ୟ ଅଟେ ମାନଗୋବିନ୍ଦର ।
ଆମ୍ଭର ଯେ ସୈନ୍ୟ ସଂଖ୍ୟା ଅଟଇ ଅଳପ
କେମନ୍ତେ ଜିଣିବି ବୋଲି ସଦା ମୋର ତାପ ।
ସହଦେବ ତୋ ଖୁଡୁତା କହିବାରୁ ମୋତେ
ତୋତେ ଚିନ୍ତା କଲୁ ରଣଜିତିବା ନିମନ୍ତେ ।
ଜ୍ୟେଷ୍ଠ ଭ୍ରାତାଙ୍କର ଦୁଃଖ ଦେଖିଣ କୁମର
ଶିରଝୁଣି ଉଠି କୋପେ କରଇ ଉତ୍ତର ।
କହ ପିତା କେତେ ଛନ୍ତି ତାର ସୈନ୍ୟବଳ
ଏକ ବାଣକରେ ମୁହିଁ ଛେଦିବି ସକଳ ।
ଏହା କହି ବୀରମଣି ଆମଞ୍ଚିଲା ଧନୁ
ପାଣ୍ଡବ କୌରବଙ୍କର କମ୍ପିଗଲା ତନୁ ।
ଉଭୟ କୁଳରେ ସୈନ୍ୟ ହୋଇଲେ କାତର
ସପ୍ତରଥୀ ସହିତରେ ଯେତେକ ଅମର ।
କେହି ବୋଲେ ଏହା ଅଟେ ଅତି ବିପରୀତ
ଅକାଳେ ମେଦିନୀ କିପାଁ ହୁଏ ରସାଗତ ।
ସପତ ସାଗରୁ କୂଳ ଲଙ୍ଘେ କି ଏଥର
ସମସ୍ତଙ୍କ ହେଲା ଯେହ୍ନେ ଭୟର ସଞ୍ଚାର ।
ଯୁଧିଷ୍ଠିର ସ୍ୱଚକ୍ଷୁରେ ଏମନ୍ତ ଦେଖିଲେ
ଧାଇଁ ଯାଇଁ କୁମରକୁ କୋଳରେ ଧଇଲେ ।
ମୁଖେ ଚୁମ୍ବ ଦେଇ ତାକୁ ଆଶ୍ୱାସନା କରି
ବୋଇଲେ କ୍ଷଣେକ ରହ ଆସନ୍ତୁ ଶ୍ରୀହରି ।

ଭୀମସେନ ବୋଇଲାକ ଶୁଣରେ କୁମର
ଚାଲ ତୁ ମଣୋହି ବେଳ ହେଉଛି ଉଚ୍ଛୁର ।
ଏମନ୍ତ ବଚନ ଶୁଣି ସେ ବେଲାଳସେନ
ସ୍ନାନ କରିବାକୁ ତହୁଁ କରିଲା ଗମନ ।
ଇନ୍ଦ୍ର ପ୍ରଶସ୍ତକୁ ଜିଣି ନଗ୍ରର ଉହାଡ଼େ
ବହଇ ଯମୁନା ନଦୀ ପୂର୍ବେ ଛଇଛାଡ଼େ ।
ସେହି ନଦୀରେ କୁମର ଯାଇଁ ଜଳେ ପଶି
ଶିରୁ କଳଙ୍କ ଛଡ଼ାଏ ପଥରରେ ଘଷି ।
ଧର୍ମଙ୍କ ମୁଖରୁ ଶୁଣି ତାର କଥାମାନ
ନଦୀକୂଳକୁ ଚଳିଲେ ଦେବ ଭଗବାନ ।
ବେଲାଳ ଦୂରରୁ ଦେଖି ଶ୍ରୀକୃଷ୍ଣଙ୍କ ଚିହ୍ନ
ମନରେ ବିଚାର କଲା ଏହୁ ଜନାର୍ଦ୍ଦନ ।
ତହୁଁ ଭୀମଙ୍କ କୁମର ତୁରିତେ ଉଠିଲା
ଶ୍ରୀକୃଷ୍ଣ ପଦ୍ମପାଦେ ନିଉଛାଳି କଲା ।
ତାକୁ ଦେଖି ପଚାରିଲେ ଶୁଣରେ କୁମର
କେବଣ ଦେଶର ବୀର କାହିଁ ତୋର ଘର ।
ଆବର ତୋହର ନାମ କିସ ବା ଅଟଇ
କିଏ ସେ ଅଟନ୍ତି ତୋର ପିତା ମାତା ଦୁଇ ।
ଶ୍ରୀକୃଷ୍ଣ ବଚନ ଶୁଣି ବୋଲେ ସେ ନନ୍ଦନ
ବେଲାବଳୀ ମାତା ମୋର ପିତା ଭୀମସେନ
ଯେ କାଳରେ ଦୁର୍ଯ୍ୟୋଧନ ବିଷଲଡୁ ଦେଲେ
ଭୀମସେନ ଭାସି ଭାସି ପାତାଳେ ଲାଗିଲେ ।
ବାସୁକି ରାଜାର କନ୍ୟା ଅଟେ ମୋ ଜନନୀ
ମାରୁତିକି ସଂପ୍ରଦାନ କଲେ କନ୍ୟା ଘେନି ।
ମାତାଗର୍ଭେ ଯେତେବେଳେ ମୋତେ ଦୁଇମାସ
ମଧ୍ୟପୁରକୁ ଅଇଲେ ପିତା ବାୟୁଶିଷ୍ୟ ।
ଆସିଲାବେଳେ ମାତାକୁ କହିଲେ ବୁଝାଇ
ମୋ ତୋ ନାମ ପୁତ୍ରକୁ ଯେ ଦେବୁ ତୁ ମିଶାଇ
ଯେଉଁକାଳୁ ମାତାଗର୍ଭୁ ଭୂମିରେ ପଡ଼ିଲି
ମାତା ପିତା ଦୁଇ ନାମ ମିଶ୍ରିତ ପାଇଲି ।
ସେଥିପାଇଁ ତୁମ୍ଭେ ଶୁଣ ହେ ପୁରୁଷୋତ୍ତମ
ବେଲାଳସେନ ବୋଲିଣ ଅଟେ ମୋର ନାମ
ପରିଚୟ ଦେଲା ଯହୁଁ ସେ ବେଲାଳସେନ
କୋମଳ ବାକ୍ୟେ କହିଲେ ଶ୍ରୀ ମଧୁସୂଦନ ।
କାହିଁପାଇଁ ଆସିଅଛୁ ତୁହି ଏ ସ୍ଥାନକୁ
ମିଥ୍ୟା ନ କହି ପ୍ରକୃତ କହରେ ଆମ୍ଭଙ୍କୁ ।
ବେଲାଳ ବୋଇଲେ ତେବେ ଶୁଣ ଚକ୍ରଧର
କୁରୁ ପାଣ୍ଡବ ମଧ୍ୟରେ ହୋଇବ ସମର ।
ମାନଗୋବିନ୍ଦର ଅଟେ ଅଗଣିତ ସୈନ୍ୟ
ପାଣ୍ଡବମାନଙ୍କ ସୈନ୍ୟ ତାଙ୍କଠାରୁ ନ୍ୟୂନ ।

ତେଣୁ ମୋତେ ସୁମରଣା କଲେ ପିତା ମୋର
ସେଥିପାଇଁ ଆସିଅଛି ମୁହିଁ ମଧପୁର ।
ଦେଖିଲି ଜ୍ୟେଷ୍ଠ ତାତଙ୍କ ବିମର୍ଷ ବଦନ
ପ୍ରତିଜ୍ଞା କଲି ମାରିବି ବୋଲି ଶତ୍ରୁ ସୈନ୍ୟ ।
ତେଣୁ ଧାର କରୁଛି ମୁଁ ଘଷି ଏହି ଶର
କୁମର ବଚନ ଶୁଣି କହନ୍ତି ଶ୍ରୀଧର ।
ମାନଗୋବିନ୍ଦର ଅଟେ ସୈନ୍ୟ ଅକଳିତ
ଗୋଟିଏ ଶରରେ ତୁହି କି କରିବୁ ସୁତ ।
କେଉଁରୂପେ ମାରିବୁ ତୁ ଅକଳିତ ସୈନ୍ୟ
ତେଣୁ ତୋ କଥାରେ ପ୍ରତେ ନ ହୁଏ ମୋ ମନ ।
ଭୀଷ୍ମ ସେନାପତି ବୋଲି ଅଟେ ଯେଉଁ ବୀର
ଇଚ୍ଛା ମରଣ ତାହାର ଜାଣରେ କୁମର ।
କ୍ଷତ୍ରୀ ହୋଇଣ ତାହାକୁ କେ ଜିଣିବ ରଣେ
ହାତେ ଅସ୍ତ୍ର ଥିଲେ ଜୟୀ ହେବ କିଏ ଦ୍ରୋଣେ ।
ପୁଣ ଦେଖ ରହିଛନ୍ତି କର୍ଣ୍ଣ ସେନାପତି
ଯାର ପାଦଘାତ ସହି ନ ପାରଇ କ୍ଷିତି ।
କୃପ ଅଶ୍ୱତ୍ଥାମା ଦୁହେଁ ଅଟନ୍ତି ଅମର
କେଭେ ଜିଣି ନ ପାରିବେ ବ୍ରହ୍ମା ପୁରନ୍ଦର ।
ଶଲ୍ୟକୁ ମୁଁ ସଦାକାଳେ କରିଥାଏ ଭୟ
ଭୂରିଶ୍ରବା ମହାବୀର ଅଟନ୍ତି ଅଜେୟ ।
ଦୁର୍ଯ୍ୟୋଧନ ଶତଭାଇ ଅତି ବଳୀୟାର
ତା ସଙ୍ଗେ ଛନ୍ତି ସହସ୍ରେ ପୁଣି ନୃପବର ।
ବାରଶତ ଅକ୍ଷୌହିଣୀ ସୈନ୍ୟରେ ନାୟକ
ମହାପ୍ରତାପୀ ଅଟନ୍ତି ସର୍ବେ ଏକୁଁ ଏକ ।
ମାଳବ ଦେଶର ରାଜା ନାମ କୃପବର୍ମା
ତାହାର ହସ୍ତୀର ନାମ ପୁଣି ଅଶ୍ୱତ୍ଥାମା ।
ବାର ଯୋଜନ ଅଟଇ ଯେ ହସ୍ତୀର କାୟା
ଅଲମ୍ବୁଷ ରାକ୍ଷସର ଅଟେ ବଡ଼ ମାୟା ।
ମାନଗୋବିନ୍ଦର ବଳ କହିଲେ ନ ସରେ
କାହିଁ ଶର ମାରିବୁ ତୁ କେଉଁ ପରକାରେ ।
ତେଣୁ ପ୍ରତେ ନ ହୁଅଇରେ କୁମରମଣି
ତାହା ଶୁଣିଣ ବେଲାଳ ଉଠେ ଶିରଝୁଣି ।
ଅଧରେ ବଦନ ଚାପି ବୋଲଇ ବଚନ
ଏକ ଏକ ଶରେ ଅଛି ତାହାଙ୍କ ଜୀବନ ।
ଆହେ ଦେବ ସ୍ୱାମୀ ତୁମ୍ଭେ କହିଲ ନ ଜାଣି
ଏକ ଶରେ ଶତ୍ରୁ ସୈନ୍ୟ ପକାଇବି ହାଣି ।
ମାରିବି ମୁଁ କୁରୁବଳ ନ ଥୋଇବି ଏକ
ତହିଁ ପାଇଁ ଏ ଶରକୁ ଘଷୁଅଛି ଦେଖ ।
ତୁମ୍ଭେ ବୋଇଲ ହେ ନାଥ ଥାଟ ଅକଳିତ
ଏପରି ପୂରିବ ଯେବେ ବ୍ରହ୍ମାଣ୍ଡ ସପତ ।

କୋଟି ଭୀଷ୍ମ କୋଟି ଦ୍ରୋଣ କୋଟି କର୍ଣ୍ଣ ହେଉ
କୃପ ଅଶ୍ୱତ୍ଥାମା କୋଟି କୋଟି ରହିଥାଉ ।
ପୁଣି ଦୁର୍ଯ୍ୟୋଧନ ସହ ଶତଭାଇ ଛନ୍ତି
ସେହି କୋଟିଗୁଣ ଯେବେ ବର୍ଦ୍ଧିତ ହୁଅନ୍ତି ।
ତେତିଶ କୋଟି ଅମର ଛନ୍ତି ସ୍ୱର୍ଗପୁରେ
ଜଣକ ହୁଅଇ ଯେବେ ଲକ୍ଷେକ ଗୁଣରେ ।
ନିଶ୍ଚୟ ମାରିବି ମୁହିଁ ଏଥେ ନାହିଁ ଆନ
ସତ୍ୟ କରିଣ କହୁଛି ଶୁଣ ଭଗବାନ ।
ଏ ସକଳ କଥା ଶୁଣି ଦେବ ନାରାୟଣ
ବୋଇଲେ ଗୋଟିଏ କଥା କହେ ଏବେ ଶୁଣ
କୌରବ ପାଣ୍ଡବ ସୈନ୍ୟ ମିଶାମିଶି ହୋଇ
ରହିଛନ୍ତି ଏକତ୍ରରେ ବାରଣ ନୁହଇ ।
ଯଦ୍ୟପି କୌରବ ସୈନ୍ୟ ଦେଇପାରୁ ବାଛି
ତେବେ ତ ଜାଣିବା ତୋର ବୀରପଣ ଅଛି ।
ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରୁ ଏ ବଚନ ଶୁଣି
ଆନନ୍ଦିତ ହୋଇ ତହୁଁ ସେ କୁମରମଣି ।
ବୋଇଲା ଶର ମୁନରେ କେଉଁ ଚିହ୍ନ ଦିଅ
ଦୁଇ ସୈନ୍ୟଙ୍କୁ ପୃଥକ କରିବି ନିଶ୍ଚୟ ।
ଶୁଣି କୃଷ୍ଣ ଶରମୂନେ ଅର୍ପିଲେ ସିନ୍ଦୂର
ତହୁଁ ସେ ବୋଇଲେ ତୁହି ବିନ୍ଧରେ କୁମର ।
ଦୁର୍ଯ୍ୟୋଧନ ସର୍ବ ସୈନ୍ୟ କପାଳ ଦେଶରେ
ତୋର ଶର ଯେବେ ଟିକା ଦେଇ ଆସିପାରେ
ତେବେ ଜାଣିପାରିବା ତୋହର ବୀରପଣ
ଶ୍ରୀକୃଷ୍ଣ ବାକ୍ୟେ କୁମର ବିନ୍ଧିଲାକ ବାଣ ।
ଚକ୍ଷୁ ପଲକେ ସିନ୍ଦୂର ଟୋପା ଭାଲେ ଦେଲା
କୌରବ ସୈନ୍ୟମାନଙ୍କୁ ଅଲଗା ବାଛିଲା ।
ବେଲାଳସେନ କ୍ଷମତା ସମକ୍ଷେ ଦେଖିଣ
ସ୍ତମ୍ଭୀଭୂତ ହୋଇଲେ ଯେ ଦେବ ନାରାୟଣ ।
ପୁଣିହିଁ ବୋଇଲେ ତୁହି ଶୁଣରେ କୁମର
ଆମ୍ଭେ ଲୁଚିଲେ ଖୋଜି କି ପାରିବ ତୋ ଶର ।
ତାହା ଶୁଣିଣ ଉତ୍ତର କରିଲା ବେଲାଳ
ଯହିଁ ଲୁଚ ଦେବ ଖୋଜି ନୋହିବ ବିଫଳ ।
ତାହା ଶୁଣି ଜଗନ୍ନାଥ ହେଲେ ଅନ୍ତର୍ହିତ
ତାର କନିଷ୍ଠାଙ୍ଗୁଳିରେ ଲୁଚିଲେ ତୁରିତ ।
ତହୁଁ ବେଲାଳ ପେଷିଲା ତା ଅଜେୟ କାଣ୍ଡ
କାର୍ମୁକରୁ ବାହାରିଲା ଯେସନ ମାର୍ତ୍ତଣ୍ଡ ।
କାଣ୍ଡକୁ ବୋଲେ କୁମର ଯାଅ ତୁହି ବେଗେ
କାହିଁଛନ୍ତି ଜଗନ୍ନାଥ ଆଣ ମୋର ଆଗେ ।
ଆଜ୍ଞାପାଇ ଚଳିଗଲା ସେ ଅଜେୟ କାଣ୍ଡ
ପ୍ରଥମେ ଖୋଜିଲା ଯାଇ ଚଉଦ ବ୍ରହ୍ମାଣ୍ଡ ।

କାହିଁ ନ ପାଇଣ ପୁଣି ଅଇଲା ଲେଉଟି
ଧଇଲା ଆସି କୁମର କନିଷ୍ଠ ଅଙ୍ଗୁଷ୍ଠି ।
ତାହା ଦେଖିଣ ବେଲାଳ କରିଲା ଉତ୍ତର
ଅଙ୍ଗୁଷ୍ଠି କୋଣରୁ ପ୍ରଭୁ ସତ୍ୱରେ ବାହାର ।
ଆହେ ଦୟାମୟ ହରି କେଡ଼େ ମାୟା କଲ
ଜଗନ୍ନାଥ ହୋଇ ମୋ ଶରକୁ ହାରିଗଲ ।
ଏବେ ନଖକୋଣୁ ମୋର ବହିର୍ଗତ ହୁଅ
ଆଉ କି ପରୀକ୍ଷା ଅଛି ମୋ ଆଗରେ କହ ।
ଏମନ୍ତ ଦେଖିଣ ହରି ହୋଇ ସ୍ତମ୍ଭୀଭୂତ
ତାହାର ନଖ କୋଣରୁ ହେଲେ ବହିର୍ଗତ ।
ମନେ ମନେ ବିଚାରିଲେ ଦେବ ଭାବଗ୍ରାହୀ
ଏହି ଅଦଭୂତ କଥା କାହିଁ ଦେଖାନାହିଁ ।
ଅଠର ଦିବସ ମୁହିଁ କରିବି ସମର
ନିମିଷକେ ସବୁଙ୍କୁ ଏ କରିବ ସଂହାର ।
ଯୁଦ୍ଧର କୌତୁକମାନ ଦେଖି ନ ହୋଇବ
କ୍ଷଣକରେ ଏ ବାଳକ ସମସ୍ତ ନାଶିବ ।
ଏମନ୍ତ ବିଚାର କରି ଦେବ ଜନାର୍ଦ୍ଦନ
କୁମରକୁ କହିଲେ ସେ ମଧୁର ବଚନ ।
ଧନ୍ୟ ତୁହି କୁମରରେ କ୍ଷତ୍ରି ଶିରୋମଣି
ଧନ୍ୟ ଧନ୍ୟ ତୋହରରେ ଯେ ଗର୍ଭଧାରିଣୀ ।
ଧନ୍ୟ ଧନ୍ୟ ବୃକୋଦର ତୋତେ କଲା ଜାତ
ତୋ ବୀରପଣକୁ ଧନ୍ୟ ଧନ୍ୟ ଆରେ ସୁତ ।
କେଉଁ ଶୁଭଲଗ୍ନେ ଜାତ ହେଲୁରେ କୁମର
ଧନ୍ୟ ଧନ୍ୟ ପ୍ରତିଜ୍ଞା ଯେ ଅଟଇ ତୋହର ।
ଧନ୍ୟ ଧନ୍ୟ ଆରେ ବାବୁ ତୋ ପ୍ରାଣକୁ ଧନ୍ୟ
ଧନ୍ୟ ପୁରୁଷ ତୁହିରେ ଅଟୁ ବୁଦ୍ଧିମାନ ।
ଯାହା ମୁଁ କହିଲି ବାବୁ ଦେଖାଇଲୁ ମୋତେ
ଆବର ଗୋଟିଏ କଥା ମାଗୁଅଛି ତୋତେ ।
ଶ୍ରୀକୃଷ୍ଣ ବଚନ ଶୁଣି କହଇ ବେଲାଳ
ଯା ମାଗିବ ଦେବି ସତ୍ୟ ସତ୍ୟ ଆଦିମୂଳ ।
ତହୁଁ ଶ୍ରୀକୃଷ୍ଣ ପ୍ରଶଂସା କରିଲେ ବହୁତ
ତାର ମନକୁ କରିଲେ ମାୟାରେ ଜଡ଼ିତ ।
ସତ୍ୟ କରାଇ ତାହାକୁ ବୋଇଲେ ବଚନ
ତୋ ଶିର କମଳ ମୋତେ ଦେବୁରେ ନନ୍ଦନ ।
ତାହା ଶୁଣିଣ ବେଲାଳ ହୋଇ ତୋଷମତି
ବୋଲେ ମୁଁ ମାଗିବି ଯାହା ଦେବୁ କି ଶ୍ରୀପତି ।
ଶୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ଆରେ ବାଳ
ଯା ମାଗିବୁ ଦେବି ଛାଡ଼ି ତୋ ଶିର କମଳ ।
ବେଲାଳ ବୋଇଲା ଦେବ କଲ ବୁଦ୍ଧିହୀନ
ଶିରକମଳ ମାଗିବି ମନେକଲ ଜ୍ଞାନ ।

କ୍ଷତ୍ରୀମାନଙ୍କର ଏହା ଉଚିତ ନୁହଇ
ଦେଲାପଦାର୍ଥରେ ଆଉ ଲୋଭ କି ରହଇ ।
ଯେଉଁ ପଦାର୍ଥ ଯାହାକୁ ଯାଚିଣ ଦିଅନ୍ତି
ପୁନର୍ବାର ହରିଲେ ସେ ଅଧୋଗତି ହୋନ୍ତି ।
ପୁରାଣେ ଏପରି କଥା ଉକତ ହୋଇଛି
କୁମର ବଚନ ଶୁଣି ଭାଳନ୍ତି ଶ୍ରୀବତ୍ସି ।
ଧନ୍ୟ ଏହାର ବଚନ କାହିଁ ଦେଖିନାହିଁ
ମଧୁର ବଚନେ ପୁଣି ବୋଇଲେ ବୁଝାଇ ।
କିସ ମାଗୁଛୁ ମୋହର ଦେବା ହେଲା ମୂଳ
ଶୁଣି ହରଷ ହୋଇଲା ମାରୁତିର ବାଳ ।
ବୋଇଲା ଜଗତନାଥ ତେବେ କାଟ ଶିର
ଏତିକି ମାତ୍ର ସୁଦୟା ମୋର ପ୍ରତି କର ।
ଦିବ୍ୟଚକ୍ଷୁ ଦେଇ ମୋତେ ରଖ ସ୍ତମ୍ଭୋପରି
ଅଠରଦିନ ସମର ଦେଖିବି ଯେପରି ।
ସମର ଶେଷରେ ପଛେ ଯାଉ ଏ ଜୀବନ
ଏତିକି ପ୍ରାର୍ଥନା ମୋର ଘେନ ଜନାର୍ଦ୍ଦନ ।
ତାହା ଶୁଣି ଜଗନ୍ନାଥ କଲେ ସନମତ
ଚକ୍ରରେ କୁମର ଶିର ଛେଦିଲେ ତୁରିତ ।
ଶିରନେଇ ଶୁଭସ୍ତମ୍ଭ ଉପରେ ରଖିଲେ
ତହୁଁ ଯୁଧିଷ୍ଠିର ପାଶେ ଗମନ କରିଲେ ।
ପଥେ ଯାଉଁ ଯାଉଁ ହରି ଭାବିଲେ ଏମନ୍ତ
ଉପାୟେ ଭୀମପୁତ୍ରକୁ କରିଲି ତ ହତ ।
ଏ କଥା କହିଲେ ନିଶ୍ଚେ ମାରୁତି ରାଗିବ
ପୁତ୍ର ହତ ଶୁଣି ଆଜି ସେ ମୋତେ ମାରିବ ।
ଯାହାହେଉ ତହିଁକି ଯେ ନ କରିବା ଚିନ୍ତା
ଅଠରଦିନ ସମର ମୋର ବୃଥା ହନ୍ତା ।
ଏହା ଭାଳି ଯାଉଁ ଯାଉଁ ଦେବ ଦୟାନିଧି
କପଟରେ ବିଚାରିଲେ ଏହିପରି ବୁଦ୍ଧି ।
ଶୁଭସ୍ତମ୍ଭ ମାଗେ ବଳି ଜଣେ ଆମ୍ଭପରି
କାହାକୁ ଦେବା ଯାଇଣ ପୁଛିବି ଏପରି ।
ଏହା ଭାବି ଜଇନ୍ତାରେ ହୋଇଲେ ପ୍ରବେଶ
ବସିଥିଲେ ଚାରିଭାଇ ଘେନି ଧର୍ମଶିଷ୍ୟ ।
କିଛିଦୂରେ ରହି ହରି ପ୍ରଣାମ କରିଲେ
ଶ୍ରୀମୁଖ ଶୁଖାଇ ହରି ଉଭା ଯେ ହୋଇଲେ ।
ଶ୍ରୀକୃଷ୍ଣଙ୍କ ମୁଖ ଶୁଷ୍କ ଦେଖି ଯୁଧିଷ୍ଠିର
ପୁଚ୍ଛିଲେ ମୁଖ କାହିଁକି ଶୁଖିଛି ତୁମ୍ଭର ।
କିଛି ନ କହି ବିସ୍ମୟେ ରହନ୍ତେ ମୁରାରୀ
ଭୀମସେନ ପୁଚ୍ଛେ ତାଙ୍କୁ ଆହେ ଚକ୍ରଧାରୀ ।
କାହିଁପାଇଁ ତବ ମୁଖ ଦିଶଇ ବିରସ
କିଏ ପ୍ରଭୁ ତମ୍ଭଙ୍କୁ କି କରିଛି ଝିଙ୍ଗାସ ।

ଯାଦବପତି ବୋଲନ୍ତି ଦୁଃଖେ ତାଙ୍କୁ ଚାହିଁ
କୁରୁକ୍ଷେତ୍ର ମଣ୍ଡଳିକୁ ଯାଇଥିଲି ମୁହିଁ ।
ଶୁଭସ୍ତମ୍ଭ ମାଗେ ବଳି ବଡ଼ ଆଚମ୍ବିତ
ଆମ୍ଭମାନଙ୍କ ପରାୟେ ନେଲେ ହେବ ତୃପ୍ତ ।
ତେଣୁକରି ମୋର ମନ ହେଉଛି ବିରସ
ଯାହା ଶୁଣି ଅଇଲି ତା କଲଇଁ ପ୍ରକାଶ ।
ଏଥିକି ତୁମ୍ଭମାନଙ୍କ ଅଛି କି ଉପାୟ
ଭଲରୂପେ ବିଚାରିଣ ମୋ ଆଗରେ କହ ।
ଯୁଧିଷ୍ଠିର ବୋଇଲେକ ଆମ୍ଭେ ଷଡ଼ଜଣ
ଜନ୍ମ ହୋଇଛୁ କରିବୁ ଭାରା ନିବାରଣ ।
ଭୀମସେନ ବୋଇଲେକ ଶୁଣ ହେ ଶ୍ରୀବତ୍ସି
ଆମ୍ଭର ସମାନ ଏକ କାହୁଁ ଆଣ ବାଛି ।
ଏହା କହି ପାଞ୍ଚଭାଇ ହୋଇଲେ ଆକୁଳ
ଝରଝର ବହିପଡ଼େ ନୟନରୁ ଜଳ ।
ଯୁଧିଷ୍ଠି ବୋଲନ୍ତି କାନ୍ଦି ଶୁଣ ହେ ମାଧବ
ସବୁଠାରୁ ରଖି ଏବେ ଶୁଭଖମ୍ଭେ ଦେବ ।
ଆରେ ସହଦେବ ଭୀମ ଅର୍ଜ୍ଜୁନ ନକୁଳ
ଆମ୍ଭମାନଙ୍କର ଅଟେ କି ପୋଡ଼ା କପାଳ ।
ଜତୁଘରେ ମରିଥିଲେ ଭଲ ହୋଇଥାନ୍ତା
ଏତେ ଦୁଃଖ ସହିବାକୁ ଆଉ ଯେ ନୁହନ୍ତା ।
କେତେ କେତେ କଷଣରୁ ଉଧୁରି ଅଇଲୁ
ଏବେ ବାବୁ ଶୁଭଖମ୍ଭ ହାବୁଡ଼େ ପଡ଼ିଲୁ ।
ଆରେ ଭୀମ ତୁହି ଯେବେ ନାଗପୁରେ ଥାନ୍ତୁ
ଏ ଶୁଭସ୍ତମ୍ଭର କଥା କିପାଇଁ ଶୁଣନ୍ତୁ ।
ଆରେ ବାବୁ ଅରଜୁନ ତୁ କୃଷ୍ଣଙ୍କ ଆତ୍ମା
ତୋତେ କେହ୍ନେ ଦେବାକୁ ମୁଁ ଭାବଇ ଦୁରାତ୍ମା
ଏ ନକୁଳ ସହଦେବ ମାଦ୍ରୀ ବେନିପୁଅ
ଏହାଙ୍କୁ ଦେବାପାଇଁକି ହୃଦେ ଜନ୍ମେ କୋହ ।
ମୁହିଁ ଆଦ୍ୟରୁ ହେ ହରି ଅର୍ଜିଛି ଏ କର୍ମ
ମୋତେ ଛେଦି ବଳି ଦିଅ ହେ ପୁରୁଷୋତ୍ତମ ।
ରାଜ୍ୟ ସମ୍ପଦରେ କାର୍ଯ୍ୟ ନାହିଁ ଯେ ମୋହର
ଦୁର୍ଯ୍ୟୋଧନ ତୁଲେ ନୋହୁ ଆମ୍ଭର ସମର ।
ଯୁଦ୍ଧହେତୁ ସ୍ତମ୍ଭଠାରେ କିପାଁ ହେବ ହତ
ବାହୁଡ଼ି ବନକୁ ପୁଣି ଯିବି ଯଦୁନାଥ ।
ହେ ପ୍ରଭୁ ମୋ ପକ୍ଷେ ଏହା ଶ୍ରେୟ ଯେ ଅଟଇ
ମୋ ଛଡ଼ା ଚାରିଭାଇଙ୍କି ନ ପାରିବି ଦେଇ ।
ଭୀମ ଦେବାପାଇଁ ଯେବେ କରିବି ମାନସ
ପବନଦେବ କରିବେ ମୋହଠାରେ ରୋଷ ।
ଭୀମ ଦୁଷ୍ଟ ହେଲେ ସୁଦ୍ଧା ଦେଇ ନ ପାରିବି
ପବନ କୋପ କରିଲେ କିପରି ବଞ୍ଚିବି ।
ଶୁଣି କି ବୋଲିବେ ମୋତେ ସଂସାରର ଲୋକେ
ସୋଦର ନାଶି ପଡ଼ିବି ରଉରବ ନର୍କେ ।
ସୋଦର ନାଶିବା ବୁଦ୍ଧି ନ ଜନ୍ମୁ ମୋ ହୃଦେ
ହେ ଗୋବିନ୍ଦ ସୁବିଚାର ଦିଅ ମୋତେ ହାଦେ
ଏହା ଶୁଣି ଜଗନ୍ନାଥ କହିଲେ ଏସନ
ଏଥିପାଇଁ କିପାଁ ଚିନ୍ତା କରୁଛ ଆପଣ ।
ଭୀମର ବିକଳ ଯାହା କହୁ ନ ସରଇ
ମୋହର ଦୁଷ୍ଟ ପ୍ରକୃତି ସବୁଦିନେ ଥାଇ ।
ଷାଠିଏ ପଉଟି ଅନ୍ନ ବେଳେ ନ ଅଣ୍ଟଇ
ତିନିଶ ଷାଠିଏ ପୌଟି ଦ୍ୱିବେଳେ ଘଟଇ
ସବୁଠାରେ ମୋର ଦୁଷ୍ଟ କଥାମାନ ଶୁଣି
ତେଣୁ ମୋଠାରେ କୋପବା କଲେ ଚକ୍ରପାଣି
ଏ ମୋହର ଦୁଷ୍ଟପଣ ଦେଖି ତ ନ ପାରି
ତେଣୁକରି ଶୁଭସ୍ତମ୍ଭେ ଦେବେ ମୋତେ ମାରି
ମାରୁତି ବିକଳ ଜାଣି ପୁରୁଷ ଉତ୍ତମ
ବୋଇଲେ କାହିଁକି ଚିନ୍ତା କରୁ ମନେ ଭୀମ ।
କୌଣସି ଚିନ୍ତା ମନରେ ନ କର ମାରୁତି
ତୁହି ଏକାକେ ଉଶ୍ୱାସ କରିବୁ ଏ ପୃଥ୍ୱୀ ।
ତୋ ପରି ବୀରକୁ ଯେବେ ଦେବା ଶୁଭଖମ୍ଭେ
କାରେ ଘେନି ପୃଥ୍ୱୀଭାରା ଉଶ୍ୱାସିବୁ ଆମ୍ଭେ ।
ପାର୍ଥର ବିକଳ କଥା କେ କହି ପାରିବ
ଭାଳେ ଏତେକାଳେ କୋପକଲେ ବାସୁଦେବ
ଶତଧନୁର ଶରଣ ମନେ ଥିଲେ ଧରି
କୂଟ ଶୁଭସ୍ତମ୍ଭେ ଏବେ ଦେବେ ମୋତେ ମାରି ।
ସୁଭଦ୍ରା ହରଣେ ପୁଣି ମନେ ଥିଲା ରାଗ
ଏତିକି ବେଳେ ପଡ଼ିଛି ତାହାଙ୍କୁ ସୁଯୋଗ ।
ବଳରାମ ହାରିଥିଲେ ମୋ ସଙ୍ଗେ ସମରେ
ସତ୍ୟା ଜାମ୍ବୁବତୀ ମୋର ସେବନ୍ତି ପୟରେ ।
ଏକାଳେ ପଡୁଛି ମନେ ସେ ରାଗ ସକଳ
ବଳି ନିଶ୍ଚେ ଦେବେ ଭାଳି ଅର୍ଜ୍ଜୁନ ବିକଳ ।
ଅର୍ଜ୍ଜୁନ ବିକଳ ଦେଖି ବୋଇଲେ ଶ୍ରୀହରି
ପାର୍ଥ କିପାଇଁ ବିକଳ ହେଉଛୁ ଏପରି ।
ତୁହି ମୋର ପଞ୍ଚଭୂତ ଆତ୍ମା ଅଟୁ ପାର୍ଥ
ତୋତେ ଶୁଭସ୍ତମ୍ଭେ ମୁହିଁ ଦେବଇଁ କେମନ୍ତ ।
ତୁହି ବୀରଙ୍କର ଅଟୁ ମହା ଧନୁର୍ଦ୍ଧର
ତୋତେ ଘେନି ଦୁଷ୍ଟଙ୍କୁ ମୁଁ କରଇ ସଂହାର ।
ତୁହି ମୋର ପ୍ରାଣସଖା ଜୀବର ଜୀବନ
ତୋତେ ପୁଣି ବଳିଦେବି ଭାଳୁଛୁ ଏସନ ।
କେତେ କାର୍ଯ୍ୟ କରିଛୁ ତୁ ନରଦେହ ବହି
ମୁଁ କୋପ କରିଥିଲେ କି ବର୍ତ୍ତିଥାନ୍ତୁ ତୁହି ।

ଦେଖି ରହି ପାରନ୍ତୁ କି ମୋର ବିଶ୍ୱରୂପ
ବଳରାମଙ୍କୁ ଜିଣନ୍ତୁ ତୋର କିବା ଦର୍ପ ।
ତୁ ଯେଣୁ ମୋର କଳାରେ ଅଛୁ ଅବତରି
ତେଣୁ ସାରଥି ହୋଇଲି ରଥରେ ତୋହରି ।
ଭଦ୍ରା ହରଣେ ପାଇଲୁ ଅବସ୍ଥା ତୁ ଯେତେ
ଗୁପତରେ ଚକ୍ର ସିନା ଦେଇଥିଲି ତୋତେ ।
ମୋର ଚକ୍ର ଦେଖି ସର୍ବେ ଗଲେ ଅପସରି
ତେଣୁକରି ଭଦ୍ରା ସିନା ହୋଇଲା ତୋହରି ।
ହେ ପାର୍ଥ ଅନେକଦୟା ମୋର ତୋହଠାରେ
ତୋତେ ପୁଣି ବଳି ଦେବି କେମନ୍ତ ପ୍ରକାରେ ।
ଆରେ ଧନଞ୍ଜୟ ମନେ ନ ଭାଳ ତୁ କିଛି
ତୋତେ ଘେନି କୁତୂହଳ ଭବେ ମୁଁ ଦେଖୁଛି ।
ନକୁଳ ଆକୁଳ ହୋଇ ଭାଳେ ଏକଚିତ୍ତେ
ଅତି ସୁକୁମାର ମୋତେ ଜାଣନ୍ତି ସମସ୍ତେ ।
ମାଛି ଗୋଟିଏ ମୋ ଦେହେ ଯଦ୍ୟପି ବସଇ
ଶତେପଳ ଚନ୍ଦନ ମୁଁ ସର୍ବାଙ୍ଗେ ଲେପଇ ।
ନିଶ୍ଚୟେ ମାରିବେ ମୋତେ ପ୍ରଭୁ ଦେବରାୟେ
ବଳିକି ଯୋଗ୍ୟ ହେବାକୁ ଜନ୍ମ କଲେ ମାଏ ।
ସାଧ୍ୱୀ କୁନ୍ତୀ ଦେବୀଙ୍କର ପୁତ୍ର ତିନିଗୋଟି
ଆମ୍ଭେ ଦୁଇଟି ସୋଦର ଅଟୁ ବଡ଼ କଷ୍ଟୀ ।
ଆମ୍ଭ ଦୁହିଁଙ୍କରୁ ଏକ ନିଶ୍ଚେଁ ହେବ ବଳି
କାନ୍ଦିଲା ନକୁଳ ମନେ ଏହା ଭାଳି ଭାଳି ।
ପୁଣି ଭାବେ ତ୍ରିକାଳଜ୍ଞ ଅଟେ ସହଦେବ
ତାହାକୁ ମାରି କଦାପି ନ ଦେବ କେଶବ ।
ମୁହିଁ ପାପୀ ମୋର ଅଟେ ଏ ହୀନ କପାଳ
ଏ ସଙ୍କଟୁ ପାରିକର ଆହେ ଆଦିମୂଳ ।
ଆହେ ଯୁଧିଷ୍ଠିର ଦେବ ରକ୍ଷାକର ମୋତେ
ମାଏ ଯେ ସମର୍ପି ଗଲେ ତୁମ୍ଭର ଅଗ୍ରତେ ।
ଏକବାର ଦୟାକରି ତୁମ୍ଭେ ମୋତେ ରଖ
ଉଭୟ ଦଳ ମଧ୍ୟରେ ମୋ ସମର ଦେଖ ।
ନକୁଳର ଦୁଃଖ ଜାଣି ବୋଲନ୍ତି କେଶବ
ଯୁଧିଷ୍ଠିର ତୋତେ ସାହା କେ ପୁଣି ମାରିବ ।
ନକୁଳର ଅଶ୍ରୁଧାରା ସର୍ବଦା ବହୁଛି
ଦେଖି ଯୁଧିଷ୍ଠି ବୋଇଲେ ନ ଭାଳ ତୁ କିଛି ।
ତୋହର ଆପଦ ବାବୁ ଯଦ୍ୟପି ଶୁଣିବି
ତୋପାଇଁ ନିଶ୍ଚୟ ମୋର ଶିର ସମର୍ପିବି ।
ମାଦ୍ରୀ ସମର୍ପଣ କଲେ ତୁମ୍ଭଙ୍କୁ ମୋ ତହିଁ
ଭୀମାର୍ଜ୍ଜୁନ ହୁଁ ଅଧିକ ତୁମ୍ଭଙ୍କୁ ଦେଖଇ ।
ତୁହି ନକୁଳରେ ମନେ ନ ହୁଅ ହତାଶ
ଯହିଁ ଯଦୁପତି ଛନ୍ତି ତହିଁ ଭୟ କିସ ।

ସହଦେବ ବିକଳରେ ଭାଳେ ମନେ ମନେ
ଶୁଭସ୍ତମ୍ଭେ ମାରି ମୋତେ ଦେବେ ଭାଇମାନେ
କୃଷ୍ଣଙ୍କୁ ମାୟା ଘୋଟିଛି ସବୁଙ୍କର ତହିଁ
ଏହି ମାୟା ସହଦେବ ଜାଣିପାରୁ ନାହିଁ ।
ଭାଳେ ମୁଁ ଜାଣିଣ ଯେଣୁ ନ କହଇ କିଛି
ତେଣୁ ଭାଇସହ ରାଗିଛନ୍ତି ଶିରୀବତ୍ସି ।
ପଚାରିଲେ ସମସ୍ତ ମୁଁ କହଇ ନିୟତ
ଯାହା ସେ ପୂର୍ବରୁ କରିଅଛି ସତ୍ୟବ୍ରତ ।
ଏବେ ଛଦ୍ମେ ନିଶ୍ଚୟ ପ୍ରଭୁ ଚକ୍ରଧାରୀ
ଶୁଭସ୍ତମ୍ଭେ ଆପଣ ସେ ଦେବେ ମୋତେ ମାରି
ଏସନକ ମନେ ମନେ ଭାଳେ ସହଦେବ
ଏ କଷଣୁ ରକ୍ଷାକର ମୋତେ ବାସୁଦେବ ।
ତୁମ୍ଭ ଆଶ୍ରିତେ ବର୍ତ୍ତିଛୁ ଆମ୍ଭେ ପାଞ୍ଚଭାଇ
ସର୍ବେ ବୋଲନ୍ତି ପାଣ୍ଡବେ ସାହା ଭାବଗ୍ରାହୀ
ସହଦେବ ମନ ଜାଣି ବୋଲନ୍ତି ଶ୍ରୀବତ୍ସି
ଏ ମଧ୍ୟ ବଳିଦେବାର ନ ଜାଣଇ କିଛି ।
ସମସ୍ତଙ୍କ ମନଭାବ ଜାଣି ମାୟାଧର
ବୋଇଲେ ଏବେ କରୁଛ କେବଣ ବିଚାର ।
ସମସ୍ତେ ତ ଏହା ଶୁଣି ବିକଳେ କାନ୍ଦିଲ
ବଳି ଦେବାର କଥାତ କେହି ନ କହିଲ ।
ସମସ୍ତେ ବୋଇଲେ ଆମ୍ଭେ ତୁମ୍ଭର ଆଶ୍ରିତ
ଆପଣ ଯାହା କରିବେ ଆମ୍ଭର ସମ୍ମତ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ପଞ୍ଚଆତ୍ମା ମୋର
ତୁମ୍ଭଙ୍କୁ କି ବଳିଦେବି କରିଣ ସଂହାର !
ସେତେବେଳେ ଶୁଭସ୍ତମ୍ଭ କ୍ଷେତ୍ର ମଣ୍ଡଳରେ
ବଳିଏ ମାଗିଲା ସେହୁ ଆମ୍ଭ ସଦୃଶରେ ।
ତାହା ଶୁଣି ମୋର ମନ ବିକଳ ହୋଇଲା
କିସ କରିବି ବୋଲିଣ ବୁଦ୍ଧି ହଜିଗଲା ।
ଏହା ଭାଳି ଭାଳି ମୁହିଁ ଦୁଃଖେ ଆସୁଥିଲି
ଯମୁନା ତୀରରେ ଏକ ବୀରକୁ ଦେଖିଲି ।
ତାହାକୁ ଆମ୍ଭମାନଙ୍କ ପରାୟେ ଦେଖିଣ
ସତ୍ୟ ପାଶରେ ତାହାକୁ କରିଣ ବନ୍ଧନ ।
ମାଗନ୍ତେ ଶିରକମଳ ସେହୁ ରାଜିହେଲା
ନାମ ପୁଚ୍ଛନ୍ତେ ବେଲାଳସେନ ସେ ବୋଇଲା ।
ଶୁଭସ୍ତମ୍ଭଠାରେ ତାକୁ ଘେନିକରି ଗଲି
ତାକୁ ମାରି ଶୁଭସ୍ତମ୍ଭ ଉପରେ ଥୋଇଲି ।
ଶୁଭସ୍ତମ୍ଭେ ଆସିଅଛି ଆଗ ବଳିଦେଇ
ତୁମ୍ଭମାନଙ୍କର ପାଇଁ ରଖିନାହିଁ ମୁହିଁ ।
ଆସି ବୁଝୁଥିଲି ତୁମ୍ଭମାନଙ୍କର ଚିତ୍ତ
ତୁମ୍ଭେମାନେ କାହାକୁ ଯେ ଦେବାକୁ କହନ୍ତ ।

